ଜନନାୟକ ଗ୍ରନ୍ଥମାଳା ଚତୁର୍ଥ ଖଣ୍ଡ

# ଜୋସେଫ୍ ଷ୍ଟାଲିନ୍

ଲେଖକ
ପଣ୍ଡିତ ଲିଙ୍ଗରାଜ ମିଶ୍ର, ଏମ୍. ଏ.

ପରିମାର୍ଜିତ ସଂସ୍କରଣ

ପ୍ରକାଶକ
ଷ୍ଟୁଡେଣ୍ଟ୍ସ୍ ଷ୍ଟୋର
ବ୍ରହ୍ମପୁର କଟକ
୧୯୪୭

ଛଅଅଣା

# ଜୋସେଫ୍ ଷ୍ଟାଲିନ୍

ଚୀନ୍ ବିପ୍ଳବର ପ୍ରଧାନ ଉଦ୍‌ଯୋକ୍ତା ଏବଂ ନେତା ଡାକ୍ତର ସୁନ୍‌ୟାତ୍ ସେନ୍‌ଙ୍କ ପରି ରୁଷିଆରେ ବଲ୍‌ସେଭିକ୍ ବିପ୍ଳବର ସ୍ରଷ୍ଟା ଏବଂ ସାମ୍ୟବାଦୀ ରାଜନୀତିର ପ୍ରଥମ ପ୍ରବର୍ତ୍ତକ ଓ ପ୍ରଧାନ ସଂଗଠନ-କାରୀ ଲେନିନ୍ ନିଜକୃତ କାର୍ଯ୍ୟର ସୁଫଳ ସ୍ୱଚକ୍ଷୁରେ ଦେଖିବା-ପାଇଁ ବେଶି ଦିନ ସୁବିଧା ପାଇ ନ ଥିଲେ । ୧୯୧୭ ସାଲରେ ରୁଷବିପ୍ଳବପରେ ପ୍ରଥମ କେତେ ବର୍ଷ ସେଦେଶର ବଲ୍‌ସେଭିକ୍ ସରକାରକୁ ନାନା ଅନ୍ତଃଶତ୍ରୁ, ବହିଃଶତ୍ରୁ ତଥା ଦୁର୍ଭିକ୍ଷ, ମଡ଼କ ଆଦି ଦୈବଦୁର୍ବିପାକର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏ ସବୁରୁ କିଛିଏ ଅବ୍ୟାହତି ପାଇବା ଉତ୍ତାରୁ ବିଧିବଦ୍ଧ ଭାବରେ ସାମ୍ୟବାଦୀ ନୀତିରେ ଦେଶର ସାମାଜିକ ଏବଂ ଅର୍ଥନୈତିକ ସଂଗଠନ ପାଇଁ ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥା ସ୍ଥିର କରିବା ବେଳକୁ ୧୯୨୪ ସାଲ ଆରମ୍ଭରେ ଲେନିନ୍‌ଙ୍କର ମୃତ୍ୟୁ ହୋଇଗଲା । ସୁତରାଂ ଲେନିନ୍‌ଙ୍କ ନିର୍ଦ୍ଧାରିତ ନୀତି ଏବଂ କର୍ମପନ୍ଥା ଅନୁସାରେ ସମଗ୍ର ରୁଷିଆର କୃଷି, ଶିଳ୍ପ, ବାଣିଜ୍ୟ ଇତ୍ୟାଦିର ସଂଗଠନ ଏବଂ ଉନ୍ନତି ସାଧନ କରିବାର ଗୁରୁଦାୟିତ୍ୱ ତାଙ୍କର ପ୍ରଧାନ ଶିଷ୍ୟ ଓ ସହକର୍ମୀ ଜୋସେଫ୍ ଷ୍ଟାଲିନ୍‌ଙ୍କ ଉପରେ ପଡ଼ିଲା । ଆଜି ରୁଷିଆ ଯେ ସକଳ-ପ୍ରକାର ଶ୍ରେଣୀବିଭାଗ, ସାମାଜିକ ତଥା ଆର୍ଥିକ ଅସାମଞ୍ଜସ୍ୟ

ନିଜ ଦେଶରୁ ସମ୍ପୂର୍ଣ୍ଣ ଦୂରକରି ସମଗ୍ର ପୃଥିବୀକୁ ସାମ୍ୟବାଦ ନୀତିର ଉଚ୍ଚ ଆଦର୍ଶ ପୂର୍ଣ୍ଣ ସଫଳତାର ସହିତ କାର୍ଯ୍ୟରେ ପରିଣତ କରି ଦେଖାଇ ଦେଇପାରିଛନ୍ତି ଏବଂ ସ୍ୱାଧୀନ ରୁଷିଆ ଯେ ଆଜି ଏ ପ୍ରଳୟଙ୍କର ମହାଯୁଦ୍ଧରେ ନିଜର ତ୍ୟାଗ, ଦମ୍ଭ ଏବଂ ବୀରତ୍ୱ ବଳରେ ପୃଥିବୀର ଶ୍ରେଷ୍ଠତମ ବୀର ଜାତିରୂପେ ନିଜର ଦାବୀ ପ୍ରତିଷ୍ଠିତ କରିପାରିଛି, ସେଥିପାଇଁ ରୁଷିଆର ଅପ୍ରତିଦ୍ୱନ୍ଦ୍ୱୀ ଜନନାୟକ ଜୋସେଫ୍ ଷ୍ଟାଲିନ୍‌ଙ୍କର ସାହସ, ଦୃଢ଼ତା ଏବଂ କର୍ମକୁଶଳତାହିଁ ବିଶେଷ ପ୍ରଶଂସାର୍ହ।

ଜୋସେଫ୍ ଷ୍ଟାଲିନ୍ ୧୮୭୯ ମସିହା ଡିସେମ୍ବର ମାସ ୨୧ ତାରିଖରେ ଦକ୍ଷିଣ ରୁଷିଆରେ ଜର୍ଜିଆ ପ୍ରଦେଶର ଗୋରି ସହରରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ପିତା ଭିସାରିଅନ୍ ଯୁଗୋସ୍‌ଭିଲି ଜର୍ଜିଆର ଏକ କୃଷୀବଂଶରେ ଜନ୍ମ ହୋଇଥିଲେ; ମାତ୍ର ମୋଚିକାର ବ୍ୟବସାୟକୁ ସେ ନିଜର ଜୀବିକାରୂପେ ଗ୍ରହଣ କରିଥିଲେ। ଷ୍ଟାଲିନ୍‌ଙ୍କର ମା'ଙ୍କ ନାମ ଇକାଟେରିନା। ସେତେବେଳେ ଜର୍ଜିଆରେ ଖୁବ୍ ଅଳ୍ପ ବୟସରେ ବିବାହ କରିବା ପ୍ରଥା ପ୍ରଚଳିତ ଥିଲା। ଇକାଟେରିନା ୧୩ ବର୍ଷ ବୟସରେ ବିବାହ କରିଥିଲେ। ବିବାହ ପରେ ଅଳ୍ପ କେତେ ବର୍ଷ ଭିତରେ ତାଙ୍କର ଗୋଟିକ ପରେ ଗୋଟିଏ ତିନୋଟି ସନ୍ତାନ ଜାତ ହୋଇ ଶିଶୁ ଅବସ୍ଥାରେ ମରି ଯାଇଥିଲେ। ଇକାଟେରିନାଙ୍କର ଧର୍ମରେ ଓ ଈଶ୍ୱରଙ୍କଠାରେ ଖୁବ୍ ବିଶ୍ୱାସ ଓ ଭକ୍ତି ଥିଲା। ଷ୍ଟାଲିନ୍ ଗର୍ଭରେ ଥିବାବେଳେ ତାଙ୍କର ଏ ସନ୍ତାନଟି ଈଶ୍ୱରଙ୍କର ପୂତ ସନ୍ତାନ ହେବ ଏବଂ ସେ ବହୁତ ବଡ଼ଲୋକ ହେବ, ସେଥିପାଇଁ ସେ ଈଶ୍ୱରଙ୍କ-ଠାରେ ଗଭୀରଭାବରେ ପ୍ରାର୍ଥନା କରିଥିଲେ। ପୁଅଟିଏ ଜନ୍ମ

ହେଲେ ତାର ନାମ ଜୋସେଫ୍ ରଖିବେ ବୋଲି ସେ ଆଗରୁ ମନେ ମନେ ସ୍ଥିର କରିଥିଲେ । ଷ୍ଟାଲିନ୍‌ଙ୍କର ପ୍ରକୃତ ନାମ ହେଉଛି ଜୋସେଫ୍ ଯୁଟଗୋସଭିଲ୍ । ପରବର୍ତ୍ତୀ ଜୀବନରେ ଜଣେ ମୁଖ୍ୟ ବିପ୍ଳବୀ ପ୍ରଚାରକ ଏବଂ କର୍ମୀରୂପେ ତାଙ୍କୁ ବାରମ୍ବାର ଜେଲ୍ ବା ନିର୍ବାସନ ଦଣ୍ଡ ଭୋଗିବାକୁ ପଡ଼ିଥିଲା ଏବଂ ସବୁଥର ସେ ନାନା କୌଶଳ କରି ଜେଲ୍‌ରୁ ଖସି ପଳାଇ ଆସିଥିଲେ । ଥରକୁ ଥର ଏପରି ଜେଲ୍‌ରୁ ପଳାଇ ଆସି ନିଜର ପ୍ରକୃତ ପରିଚୟ ଗୋପନ କରିବା ପାଇଁ ତାଙ୍କୁ ନୂଆ ନୂଆ ନାମ ଗ୍ରହଣ କରିବାକୁ ହୋଇଥିଲା । ଶେଷଥର ସେ 'ଷ୍ଟାଲିନ୍' ନାମ ଗ୍ରହଣ କରିଥିଲେ ଏବଂ ସେହିଦିନଠାରୁ ଜୋସେଫ୍ ଷ୍ଟାଲିନ୍ ନାମରେ ସେ ବର୍ତ୍ତମାନ ପୃଥିବୀ ଆଗରେ ପରିଚିତ । 'ଷ୍ଟାଲିନ୍' ଶବ୍ଦର ଅର୍ଥ 'Man of steel' ଅର୍ଥାତ୍ ଲୁହାର ମଣିଷ । ଷ୍ଟାଲିନ୍ ଯେ ବାସ୍ତବିକ ଜଣେ ଲୁହା ତିଆରି ମଣିଷ ଏକଥା ତାଙ୍କର ସଂକଳ୍ପରେ ଦୃଢ଼ତା ଏବଂ ଶୃଙ୍ଖଳା-ରକ୍ଷାରେ କଠୋରତା ଦ୍ୱାରା ସେ ପ୍ରମାଣିତ କରାଇ ଦେଇଛନ୍ତି ।

ଷ୍ଟାଲିନ୍‌ଙ୍କୁ ଏଗାର ବର୍ଷ ବୟସରେ ତାଙ୍କର ପିତାଙ୍କର ମୃତ୍ୟୁ ହୋଇଥିଲା । ସୁତରାଂ ତାଙ୍କ ପରିବାରକୁ ଅସହ୍ୟ ଦାରିଦ୍ର୍ୟ ଏବଂ ଅଭାବ ଭୋଗିବାକୁ ପଡ଼ିଥିଲା । ମାତ୍ର ଷ୍ଟାଲିନ୍‌ଙ୍କର ମା ଇକାଟେରିନା ଜଣେ ଖୁବ୍ ଧର୍ମପରାୟଣା ଓ ଦୃଢ଼ମନା ମହିଳା ଥିଲେ । ଜୋସେଫ୍‌ଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ଜଣେ ନାମଜାଦା ଲୋକ କରି ଗଢ଼ିବାପାଇଁ ବଦ୍ଧପରିକର ହୋଇଥିଲେ । ସ୍ୱାମୀଙ୍କ ମୃତ୍ୟୁପରେ ସେ ଦରଜି କାମ କରି କଠିନ ପରିଶ୍ରମ ଦ୍ୱାରା ପରିବାରର ଭରଣପୋଷଣ ଏବଂ ଜୋସେଫ୍‌ଙ୍କର ଶିକ୍ଷାବ୍ୟୟ ନିର୍ବାହ କରିବାକୁ ଲାଗିଲେ । ପୁଅକୁ ଉଚ୍ଚ ଶିକ୍ଷା ଦେଇ ଜଣେ ଖ୍ରୀଷ୍ଟ ଧର୍ମଯାଜକ କରାଇବା ତାଙ୍କର

ଉଦ୍ଦେଶ୍ୟ ଥିଲା । ତଦନୁସାରେ ଆଠବର୍ଷ ବୟସରେ ଷ୍ଟାଲିନ୍‌ଙ୍କୁ ଗୋଟିଏ ସ୍ଥାନୀୟ ଗିର୍ଜା ସ୍କୁଲରେ ପ୍ରବେଶ କରାହୋଇଥିଲା । ଛାତ୍ରାବସ୍ଥାରେ ଜୋସେଫ୍ ଖୁବ୍ ଅଧ୍ୟବସାୟୀ ଏବଂ ଅନୁସନ୍ଧିତ୍ସୁ ଥିଲେ । ଶିକ୍ଷକମାନେ ତାଙ୍କର ଅଧ୍ୟବସାୟ ଏବଂ ବୁଦ୍ଧି ବିଚକ୍ଷଣତା ଦେଖି ତାଙ୍କୁ ବିଶେଷ ସ୍ନେହ କରୁଥିଲେ । କୃତିତ୍ୱର ସହିତ ସ୍କୁଲ ଶିକ୍ଷା ଶେଷକରି ଏବଂ ଗୋଟିଏ ଛାତ୍ରବୃତ୍ତି ପାଇ ୧୮୯୪ ମସିହାରେ ଜର୍ଜିଆର ରାଜଧାନୀ ଟିଫ୍‌ଲିସ୍ ସହରର ଥିଓଲୋଜିକାଲ ସେମିନାରି କଲେଜରେ ସେ ନାମ ଲେଖାଇଲେ । ତାଙ୍କର ମା ଇକାଟେରିନା ମଧ୍ୟ ପୁଅଙ୍କ ସାଙ୍ଗରେ ଯାଇ ଟିଫ୍‌ଲିସ୍ ସହରରେ ରହିଲେ ।

ସେତେବେଳକୁ ରୁଷିଆରେ ଜାରଙ୍କ ମନଇଚ୍ଛା ଏକଚ୍ଛତ୍ର ଶାସନ ବିରୁଦ୍ଧରେ ସାଧାରଣଙ୍କ ଭିତରେ ଘୋର ଅସନ୍ତୋଷ ଜାତ ହୋଇଥିଲା । ଦେଶତମାମ ଚାରିଆଡ଼େ ଏ ଅସନ୍ତୋଷ କ୍ରମେ ବ୍ୟାପୁଥିଲା । କାର୍ଲ ମାର୍କସ୍‌ଙ୍କ ପୁଞ୍ଜିପତି-ବିରୋଧୀ ସାମ୍ୟବାଦନୀତି ମଧ୍ୟ ରୁଷିଆର କଲକାରଖାନାର ଶ୍ରମିକମାନଙ୍କ ମଧ୍ୟରେ ଅଳ୍ପେ ଅଳ୍ପେ ପ୍ରଚାରୁଥିଲା । ରୁଷିଆବିପ୍ଳବର ଆଦ୍ୟ ଉଦ୍ୟୋକ୍ତା ଲେନିନ୍ ରୁଷିଆର ରାଜଧାନୀ ସେଣ୍ଟ୍ ପିଟର୍ସବର୍ଗଠାରେ Social Democratic Party ବା ସାମ୍ୟବାଦୀ ଗଣତନ୍ତ୍ର ସଂଘ ନାମରେ ଜାର ସରକାରର ବିରୋଧ କରିବା ପାଇଁ ଗୋଟିଏ ଅନୁଷ୍ଠାନ ଗଠନ କରିଥିଲେ । ରୁଷିଆର ବିଭିନ୍ନ ଅଞ୍ଚଳରେ ସ୍ଥାନେ ସ୍ଥାନେ ଏ ଅନୁଷ୍ଠାନର ଶାଖାମାନ ଗଢ଼ାହେଉଥିଲା । ଟିଫ୍‌ଲିସ୍‌ଠାରେ ଏହିପରି ଗୋଟିଏ ଶାଖା ଅନୁଷ୍ଠାନ ଆରମ୍ଭ ହୋଇଥିଲା । କାର୍ଲ ମାର୍କସ୍ ଓ ଅନ୍ୟାନ୍ୟ ଚରମବାଦୀ ଲେଖକମାନଙ୍କ ବିଦ୍ରୋହାତ୍ମକ ଚିନ୍ତା-ଧାରାକୁ ଶ୍ରମିକ ଏବଂ ଜନସାଧାରଣଙ୍କ ଭିତରେ ପ୍ରଚାର କରିବା

ପାଇଁ ଏହି ଅନୁଷ୍ଠାନଦ୍ୱାରା ଘନ ଘନ ସଭା ସମିତିମାନ କରା ହେଉଥିଲା । ଷ୍ଟାଲିନ୍‌ଙ୍କ ଥିଓଲୋଜିକାଲ ସେମିନାରି ସେତେବେଳେ ଏହି ବିଦ୍ରୋହ ପ୍ରଚାରର ଏକ କେନ୍ଦ୍ର ହୋଇ ଉଠିଥିଲା । ପନ୍ଦର ବର୍ଷ ବୟସରେ ଜୋସେଫ୍ ଏହି ଗୁପ୍ତ ବିପ୍ଳବୀ ଦଳ ନେତାମାନଙ୍କର ସଂସ୍ପର୍ଶରେ ଆସି ସାମ୍ୟବାଦ ନୀତି ପ୍ରତି ଆକୃଷ୍ଟ ହେଲେ ଏବଂ କାର୍ଲ ମାର୍କ୍ସଙ୍କ ଲିଖିତ ପ୍ରବନ୍ଧ ଓ ପ୍ରଚାରପତ୍ରମାନ ପଢ଼ିବାକୁ ଲାଗିଲେ । କ୍ରମେ ବିଦ୍ୟାଳୟର କର୍ତ୍ତାମାନେ ଛାତ୍ରମାନଙ୍କର ଏ ଆପତ୍ତିଜନକ କାର୍ଯ୍ୟକଳାପ ପ୍ରତି ସନ୍ଦେହ କରି ତୀକ୍ଷ୍ଣଦୃଷ୍ଟି ଦେଲେ। ବିଦ୍ୟାଳୟର କର୍ତ୍ତୃପକ୍ଷ ଯେତେବେଳେ ଜାଣିଲେ ଯେ ଜୋସେଫ୍-ଙ୍କର ବିପ୍ଳବୀସାମ୍ୟବାଦୀ ଗଣତନ୍ତ୍ରଦଳ ସହିତ ଗୁପ୍ତ ସମ୍ପର୍କ ଅଛି, ସେତେବେଳେ ସେମାନେ ହଠାତ୍ ତାଙ୍କ ଘର ଖାନତଲାସ କଲେ ଏବଂ କାର୍ଲ ମାର୍କ୍ସଙ୍କ ଲିଖିତ ଖଣ୍ଡେ ବହି ପାଇଲେ । ଜୋସେଫ୍‌ଙ୍କୁ ସଙ୍ଗେ ସଙ୍ଗେ ୧୮୯୯ ସାଲ ମେ ମାସ ୨୯ ତାରିଖ ଦିନ କଲେଜରୁ ବାହାର କରି ଦିଆହେଲା ।

ଷ୍ଟାଲିନ୍‌ଙ୍କର ମା ତାଙ୍କ ପାଇଁ ଯେଉଁ ଭବିଷ୍ୟତ ମନେ ମନେ ଗଢ଼ିଥିଲେ, ଏହାଦ୍ୱାରା ତାହା ଚୂର୍ଣ୍ଣ ହୋଇଗଲା । ଷ୍ଟାଲିନ୍‌ଙ୍କୁ ବର୍ତ୍ତମାନ ନିଜର ଜୀବିକା ଅର୍ଜନ କରିବା ପାଇଁ ଉପାୟ ଖୋଜିବାକୁ ପଡ଼ିଲା । ପ୍ରଥମେ ସେ କିଛି ଦିନ ଗୃହଶିକ୍ଷକ ରୂପେ କାର୍ଯ୍ୟ କଲେ ଏବଂ ପରେ ଟିଫ୍‌ଲିସ୍ ମାନମନ୍ଦିରରେ ଗୋଟିଏ କିରାଣୀ କାମ ପାଇଲେ । ଏହି କାର୍ଯ୍ୟ କରିବା ଛଡ଼ା ଅବସର ସମୟ ସାକ ସେ ଶ୍ରମିକମାନଙ୍କ ମଧ୍ୟରେ ବିପ୍ଳବର ଭାବ ଓ ପନ୍ଥା ପ୍ରଚାର କରି ସେମାନଙ୍କୁ ସଂଗଠିତ କରିବାରେ ଲାଗିଥାନ୍ତି । ୧୮୯୮ ମସିହାଠାରୁ ସେ ଜଣେ ଉତ୍ସାହୀ ଏବଂ କର୍ମଠ ସଭ୍ୟରୂପେ ଟିଫ୍‌ଲିସ୍ ସାମ୍ୟବାଦୀ

ଗଣତନ୍ତ୍ର ଦଳରେ ଯୋଗ ଦେଇଥିଲେ । ଷ୍ଟାଲିନ୍ ଅକ୍ଳାନ୍ତ ଉଦ୍ୟମ-ଦ୍ୱାରା ଏହି ଗୁପ୍ତ ସ୍ଥାନୀୟ ଅନୁଷ୍ଠାନକୁ ଝୁର୍ ସଂଗଠିତ ଓ ଶକ୍ତିଶାଳୀ କରିଥିଲେ । ଲେନିନ୍ ରୁଷିଆର ଶ୍ରମିକମାନଙ୍କ ମୁକ୍ତି ପାଇଁ ଗୋଟିଏ ଗୁପ୍ତ କେନ୍ଦ୍ର ଅନୁଷ୍ଠାନ ଗଢ଼ିଥିଲେ । ଷ୍ଟାଲିନ୍ଙ୍କ ଏ ସ୍ଥାନୀୟ ଅନୁଷ୍ଠାନ ସେହି ନୀତି ଏବଂ ଆଦର୍ଶ ନେଇ ଗଢ଼ାଯାଇଥିଲା ଏବଂ ତାହାର ଗୋଟିଏ ଶାଖାରୂପେ କକେସସ୍ ପ୍ରଦେଶରେ ତୈଳଖଣି, ରେଲ୍‌ୱାଇ କାରଖାନା ଓ ଅନ୍ୟାନ୍ୟ ବଡ଼ ବଡ଼ କାରଖାନାର ଶ୍ରମିକମାନଙ୍କ ଭିତରେ କାର୍ଯ୍ୟ କରୁଥିଲା ।

୧୮୯୮ ସାଲରେ ମାର୍କସ୍ଙ୍କ ସାମ୍ୟବାଦ ନୀତିବାଦୀ ରୁଷିଆର ବିଭିନ୍ନ ଗୁପ୍ତ ଅନୁଷ୍ଠାନମାନଙ୍କର ନଅ ଜଣ ପ୍ରତିନିଧି ମିନସ୍କି ସହରଠାରେ ଏକତ୍ରିତ ହୋଇ ଗୋଟିଏ ସମ୍ମିଳନୀ କରିଥିଲେ । ସାମ୍ୟବାଦୀ ରୁଷିଆର ଇତିହାସରେ ଏହାକୁ ରୁଷିଆ ସାମ୍ୟବାଦୀ ଗଣତନ୍ତ୍ର ଶ୍ରମିକଦଳର ପ୍ରଥମ କଂଗ୍ରେସ ନାମରେ ଅଭିହିତ କରାଯାଏ । ଏହିଠାରୁହିଁ ରୁଷିଆରେ ବିପ୍ଳବୀ ବଲ୍‌ସେଭିକ୍ ଦଳର ଉତ୍ପତ୍ତି । ଏହି ସମ୍ମିଳନୀରେ ସ୍ଥିର ହୋଇଥିଲା ଯେ ରୁଷିଆରୁ ଜାରଙ୍କ ଏକଛତ୍ର ଶାସନ ଲୋପ କରିବାକୁ ହେବ ଏବଂ ପୁଞ୍ଜିପତି ଧନିକ ଶ୍ରେଣୀଙ୍କ ବିରୁଦ୍ଧରେ ନିରବଚ୍ଛିନ୍ନଭାବରେ ଭୁମୁଳ ସଂଗ୍ରାମ ଚଳାଇ ଏ ଦେଶରେ ସାମ୍ୟବାଦୀ ଗଣତନ୍ତ୍ର ପ୍ରତିଷ୍ଠା କରିବାକୁ ହେବ । ଯେଉଁ ନୂତନ ରାଷ୍ଟ୍ର ପ୍ରତିଷ୍ଠା କରାହେବ, ସେଥିରେ ଜଣେ ଲୋକ ଅନ୍ୟ ଜଣକୁ କୌଣସି ପ୍ରକାରେ ଶୋଷଣ କରିବାର ଅବସର ରହିବ ନାହିଁ । ମିନ୍‌ସ୍କି ସମ୍ମିଳନୀର ପ୍ରସ୍ତାବଗୁଡ଼ିକ ପ୍ରଚୁର-ପତ୍ର ଆକାରରେ ଗୁପ୍ତଭାବରେ ରୁଷିଆର ଗୃହଅଡ଼େ କଳକାରଖାନା ଅଞ୍ଚଳରେ ପ୍ରଚାରିତ ହେବାପରେ ଷ୍ଟାଲିନ୍ ଜର୍ଜିଆ କଳକାରଖାନାର

ଶ୍ରମିକମାନଙ୍କୁ ଭବିଷ୍ୟତ ବିପ୍ଳବପାଇଁ ସଂଗଠିତ କରିବାରେ ମନ-ପ୍ରାଣ ଦେଇ ଲାଗିପଡ଼ିଲେ ।

୧୯୦୦ ମସିହାରେ କୁର୍ଣ୍ଣାଟୋଭ୍‌ସ୍କି ନାମରେ ଲେନିନ୍‌ଙ୍କର ଜଣେ ସହକର୍ମୀ ସାମ୍ୟବାଦୀ ଟିଫ୍‌ଲିସ୍‌କୁ ଆସିଥିଲେ । ସେ ଲେନିନ୍‌ଙ୍କ ସହିତ ସାଇବେରିଆରେ ଦୀର୍ଘ ନିର୍ବାସନ ଦଣ୍ଡ ଭୋଗକରି ଫେରି-ଥିଲେ । ସୁତରାଂ ଲେନିନ୍‌ଙ୍କ ବିପ୍ଳବାତ୍ମକ ଚିନ୍ତାଧାରାରେ ସେ ସମ୍ପୂର୍ଣ୍ଣ ଅନୁପ୍ରାଣିତ ହୋଇ ଆସିଥିଲେ । ଟିଫ୍‌ଲିସ୍‌ଠାରେ ଷ୍ଟାଲିନ୍ ଅନୁଗତ ଶିଷ୍ୟ ଓ ପ୍ରଧାନ ସହକର୍ମୀରୂପେ ତାଙ୍କ ସହିତ ଯୋଗଦେଇ ସେଠାର ଶ୍ରମିକମାନଙ୍କ ମଧ୍ୟରେ ବିପ୍ଳବର ବହ୍ନି ଜାଳିଦେଲେ ।

୧୯୦୦ ଏବଂ ୧୯୦୧ ମସିହାରେ ଟିଫ୍‌ଲିସ୍‌ଠାରେ କଳ-କାରଖାନା ମାନଙ୍କରେ ଅନେକଗୁଡ଼ିଏ ଅର୍ଥନୀତିକ ଧର୍ମଘଟ ହୋଇଥିଲା । ଷ୍ଟାଲିନ୍ ଏ ସବୁର ମୂଳରେ ରହିଥିଲେ । ବିପ୍ଳବୀ ଶ୍ରମିକମାନଙ୍କୁ ସଂଗଠିତ କରି ସେ ସହରର ମଝିରେ ଜାରଙ୍କ ରାଜପ୍ରତିନିଧି ଗ୍ରାଣ୍ଡଡ୍ୟୁକ୍‌ଙ୍କ ଦାସଭବନର ଅନତିଦୂରରେ ଗୋଟିଏ ପ୍ରକାଣ୍ଡ ଶୋଭାଯାତ୍ରା କରାଇଥିଲେ । ଏହାପରେ ବିପ୍ଳବୀମାନଙ୍କୁ ଦବାଇବା ପାଇଁ ପୁଲିସ କଠୋର ଦମନ ନୀତି ଅବଲମ୍ବନ କଲା । ଟିଫ୍‌ଲିସ୍ ବିପ୍ଳବୀ କମିଟିକୁ ଭାଙ୍ଗି ଦିଆଗଲା ଓ ଷ୍ଟାଲିନ୍‌ଙ୍କ ଘର ଖାନତଲାସ ହେଲା । ତାଙ୍କୁ ଗିରଫଦାର କରିବେବାର ଜନରବ ଶୁଣି ଷ୍ଟାଲିନ୍ ସେଠାରୁ ବାଟୁମ୍ ସହରକୁ ଚାଲି ପଳାଇଗଲେ । ସେଠାରେ ଅଳ୍ପଦିନ ମଧ୍ୟରେ ସେ ଗୋଟିଏ ସ୍ଥାନୀୟ ଗଣତନ୍ତ୍ର ଦଳ ଗଢ଼ିଲେ । ତାଙ୍କର ପ୍ରେରଣାରେ ରଥ୍‌ସ ଚାଇଲ୍ଡ ଓ ମାଣ୍ଟା-ସେଭ୍ କାରଖାନାମାନଙ୍କରେ ପ୍ରବଳ ଧର୍ମଘଟ ହୋଇଗଲା । ୧୯୦୨

ମସିହା ଫେବୃୟାରି ମାସରେ ସେ ବାଟୁମ୍ ଶ୍ରମିକମାନଙ୍କର ଏକ ପ୍ରକାଣ୍ଡ ରାଜନୀତିକ ଶୋଭାଯାତ୍ରା କରାଇଥିଲେ । ସାଙ୍ଗେ ସାଙ୍ଗେ ଷ୍ଟାଲିନଙ୍କୁ ଗିରଫଦାର କରି ବନ୍ଦୀ କରାଗଲା । କୁଟାଇସ୍‌ଠାରେ ତାଙ୍କର ବିଚାର ହେଲା; ମାତ୍ର ଉପଯୁକ୍ତ ପ୍ରମାଣ ଅଭାବରୁ ତାଙ୍କୁ ଖଲାସ କରି ଦିଆଗଲା । ସେ ଟିଫ୍‌ଲିସ୍‌କୁ ଫେରିଆସି ସେଠାରେ ରେଲବାଇ ଶ୍ରମିକମାନଙ୍କର ଧର୍ମଘଟ କରାଇଲେ । ପୁଲିସ ପୁଣି ସନ୍ଦେହ କରି ତାଙ୍କ ପିଛା ଧରିବାରୁ ସେ ବାଟୁମ୍‌କୁ ପଳାଇ ଆସିଲେ । ଏଠାରେ ତାଙ୍କୁ ପୁଣି ଗିରଫଦାର କରାହେଲା ଏବଂ ଟିଫ୍‌ଲିସ୍ କମିଟିର ବେଆଇନ କାର୍ଯ୍ୟରେ ସଂଯୁକ୍ତ ଥିବା ଅଭିଯୋଗରେ ତାଙ୍କୁ ଦୁଇ-ବର୍ଷ ଜେଲ ଦଣ୍ଡ ଦିଆଗଲା ।

ବାଟୁମ୍ ଜେଲରେ ବନ୍ଦୀ ଥିବାବେଳେ ଷ୍ଟାଲିନ୍ ମାର୍କ୍‌ସବାଦ ସମ୍ପର୍କୀୟ ଅନେକଗୁଡ଼ିଏ ପୁସ୍ତକ ଜେଲ ଭିତରକୁ ଲୁଚାଇକରି ନେଇ ସେଠାରେ ତନ୍ନ ତନ୍ନ କରି ପଢ଼ିଥିଲେ । ଲେନିନ୍‌ଙ୍କ ସମ୍ପାଦିତ 'ଇସ୍କ୍ରା' ନାମକ ଗୁପ୍ତ ମାସିକ ପତ୍ର ପଢ଼ି ସେ ଲେନିନ୍‌ଙ୍କ ନୀତିବାଦ ଓ କାର୍ଯ୍ୟକ୍ରମ ପ୍ରତି ବିଶେଷ ଆକୃଷ୍ଟ ହେଲେ । ଷ୍ଟାଲିନ୍ ଏହିଠାରେ ବନ୍ଦୀଥିଲାବେଳେ ରୁଷିଆର ବିପ୍ଳବୀମାନଙ୍କ ଦ୍ୱିତୀୟ କଂଗ୍ରେସ ଲଣ୍ଡନଠାରେ ୧୯୦୩ ମସିହାରେ ହୋଇଥିଲା । ଏହି କଂଗ୍ରେସରେ ରୁଷିଆର ବିପ୍ଳବୀ ଦଳ ମତାନ୍ତର ଯୋଗୁଁ ଚରମବାଦୀ ବଲ୍‌ସେଭିଷ୍ଟ ଓ ନରମବାଦୀ ମେନ୍‌ସେଭିଷ୍ଟ ଏହି ଦୁଇଟି ଦଳରେ ବିଭକ୍ତ ହୋଇ ଯାଇଥିଲା । ଷ୍ଟାଲିନ୍ ଜେଲରେ ଥାଇ ଏ ସମ୍ବାଦ ପାଇବାମାତ୍ରେ ଲେନିନ୍‌ଙ୍କ ନେତୃତ୍ୱରେ ବଲ୍‌ସେଭିଷ୍ଟ ଦଳରେ ଯୋଗ ଦେବାକୁ ସ୍ଥିର କଲେ ।

୧୯୦୩ ମସିହାର ଶେଷବେଳକୁ ଷ୍ଟାଲିନ୍ ବାଟୁମ୍ ଜେଲରୁ ମୁକ୍ତ ହେଲେ; ମାତ୍ର ସଙ୍ଗେ ସଙ୍ଗେ ତାଙ୍କୁ ପୂର୍ବ ସାଇବେରିଆର ଇର୍କୁଟ୍ସ ପ୍ରଦେଶକୁ ତନବର୍ଷ ପାଇଁ ନିର୍ବାସିତ କରି ପଠାଇ ଦିଆହେଲା । ସେଠାରେ ପହଞ୍ଚିବାର ଅବ୍ୟବହିତ ପରେ ୧୯୦୪ ମସିହା ଜାନୁୟାରି ମାସରେ ସେ ସେଠାରୁ ଖସି ପଳାଇ ଆସିଲେ । ଏହି ନିର୍ବାସନ ସମୟରେ ସେ ଲେନିନ୍‌ଙ୍କ ଠାରୁ ବିଦେଶରୁ ଖଣ୍ଡିଏ ଉତ୍ତେଜନାପୂର୍ଣ୍ଣ ପତ୍ର ପାଇଥିଲେ । ଏହାହିଁ ଲେନିନ୍‌ଙ୍କ ସହିତ ତାଙ୍କର ପ୍ରଥମପ୍ରତ୍ୟକ୍ଷ ସମ୍ପର୍କ । ସାଇବେରିଆରୁ ପଳାଇଆସି ଷ୍ଟାଲିନ୍ ବାକୁ ତେଲଖଣି କେନ୍ଦ୍ରକୁ ଗଲେ । ସେଠାରେ ମୁସଲମାନ ଶ୍ରମିକମାନଙ୍କ ମଧ୍ୟରେ ହୁମେତ୍ ନାମରେ ଗୋଟିଏ ବିପ୍ଳବୀ ଅନୁଷ୍ଠାନର ସେ ନେତୃତ୍ୱ ଗ୍ରହଣ କଲେ ଏବଂ ଅନେକଗୁଡ଼ିଏ ଗୁପ୍ତ ବିପ୍ଳବୀ ସମିତି ଗଢ଼ାଇ କିପରି ଗୁପ୍ତଭାବରେ ବିପ୍ଳବକୁ ଅଗ୍ରସର କରାଇବାକୁ ହେବ, ସେ ବିଷୟରେ ତାଲିମ୍ କରାଇଲେ ।

୧୯୦୪ ମସିହାରେ ରୁଷିଆରେ ଗୁରୁଆଡ଼େ ଏକ ପ୍ରବଳ ସାଧାରଣ ଧର୍ମଘଟ ହେଲା । କୌଣସି କୌଣସିଠାରେ ଶ୍ରମିକମାନେ ବିଦ୍ରୋହ କରି ମାରପିଟ୍ ମଧ୍ୟ କଲେ । ବାକୁଠାରେ ଏକାଧିକ ବିରାଟ ତେଲଖଣିରେ ନିଆଁ ଲଗାଇ ନଷ୍ଟକରି ଦିଆହେଲା । ଠିକ୍ ଏହି ସମୟକୁ ଜାପାନ ସହିତ ରୁଷିଆର ଯୁଦ୍ଧ ମଧ୍ୟ ଲାଗିଗଲା । ୧୯୦୫ ଜାନୁୟାରି ମାସରେ ମସ୍କୋଠାରେ ଜାରଙ୍କର ପିତୃବ୍ୟ ଗ୍ରାଣ୍ଡ୍ ଡିଉକ୍ ସେର୍ଗିଙ୍କୁ ହତ୍ୟା କରାହେଲା । ଜାର ବଡ଼ ବିବ୍ରତ ଓ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । ପ୍ରଜାସଧାରଣଙ୍କ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା ଦାବୀକୁ ସେ ଆଉ ଏଡ଼ିଦେଇ ପାରିଲେ ନାହିଁ । ସେହି ବର୍ଷ ଅକ୍ଟୋବର ମାସରେ ଜାର୍ ଘୋଷଣା କଲେ ଯେ ପ୍ରଜାସାଧାରଣଙ୍କର

ବ୍ୟକ୍ତିଗତ ସ୍ୱାଧୀନତାରେ ହସ୍ତକ୍ଷେପ କରାହେବ ନାହିଁ ଏବଂ ରୁଷିଆରେ ଏଣିକି ପାର୍ଲିଆମେଣ୍ଟ ବ୍ୟବସ୍ଥାସଭା ପ୍ରତିଷ୍ଠା କରାହେବ ।

ଏ ମଧ୍ୟରେ ବଲ୍‌ସେଭିକ୍ ଓ ମେନ୍‌ସେଭିକ୍ ଦଳମଧ୍ୟରେ ମତାନ୍ତର ଖୁବ୍ ପ୍ରବଳ ହୋଇ ଉଠିଥିଲା । ବଲ୍‌ସେଭିକ୍ ଦଳର ନେତା ଲେନିନ୍ 'ଇସ୍‌କ୍ରା' ସମ୍ବାଦପତ୍ର ଏବଂ ଅନ୍ୟାନ୍ୟ ପ୍ରଚାର-ପତ୍ରଦ୍ୱାରା ମେନ୍‌ସେଭିକ୍‌ମାନଙ୍କ ମାଦାନୀତି ଓ କାର୍ଯ୍ୟକଳାପର ତୀବ୍ର ସମାଲୋଚନା କରି ନିଜ ଦଳର ନୀତିର ଯଥାର୍ଥତା ପ୍ରତିପାଦନ କରୁଥିଲେ । ଇସ୍‌କ୍ରା ସମ୍ବାଦପତ୍ରର ନୀତି ଅନୁସରଣ କରି ଷ୍ଟାଲିନ୍ ଜର୍ଜିଆରେ 'ବ୍ରଜୋଲା' (ସଂଘର୍ଷ) ନାମରେ ଗୋଟିଏ ସମ୍ବାଦପତ୍ର ସମ୍ପାଦନ କରି ବଲ୍‌ସେଭିକ୍ ପକ୍ଷ ସମର୍ଥନ କରୁଥିଲେ ।

୧୯୦୫ ମସିହା ଡିସେମ୍ବର ମାସରେ ଫିନ୍‌ଲାଣ୍ଡର ଟାମେରଫୋର୍ସ-ଠାରେ ବଲ୍‌ସେଭିକ୍ ଜାତୀୟ ସମ୍ମିଳନୀର ବୈଠକ ହେଲା । ଲେନିନ୍ ମେଡେଭେଲକୁ ସେହିଠାରେ ଗୁପ୍ତଭାବରେ ରହିଥିଲେ; ସେ ଏହି ସମ୍ମିଳନୀରେ ସଭାପତି ହେଲେ । କକେସସ୍ ଅଞ୍ଚଳର ପ୍ରତିନିଧିରୂପେ ଷ୍ଟାଲିନ୍ ଏ ସମ୍ମିଳନୀରେ ଯୋଗ ଦେଇଥିଲେ । ଏହି ଉପଲକ୍ଷରେ ଲେନିନ୍‌ଙ୍କ ସହିତ ପ୍ରତ୍ୟକ୍ଷ ସଂଶ୍ରବରେ ଆସି ଷ୍ଟାଲିନ୍‌ଙ୍କର ତାଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ଖୁବ୍ ବଢ଼ିଯାଇଥିଲା ।

୧୯୦୫ ବିପ୍ଳବଦ୍ୱାରା ବଲ୍‌ସେଭିକ୍‌ମାନଙ୍କର ଅଭୀଷ୍ଟ ସିଦ୍ଧି ହେଲା ନାହିଁ; ମାତ୍ର ଶ୍ରମିକମାନଙ୍କୁ ପ୍ରକାଶ୍ୟ ଭାବରେ ସଂଗଠିତ କରିବା ପାଇଁ କେତେକ ପରିମାଣରେ ସୁବିଧା ଓ ସମ୍ବାଦପତ୍ର-ମାନଙ୍କରେ ପ୍ରକାଶ୍ୟ ଭାବରେ ମତ ବ୍ୟକ୍ତ କରିବାର ସ୍ୱାଧୀନତା ମିଳିଲା । ରୁଷିଆରେ ପ୍ରଥମ ପ୍ରଜାପ୍ରତିନିଧି ସଭା ବା 'ଡୁମା'ର

ନିର୍ବାଚନ ପାଇଁ ବଲ୍‌ସେଭିକ୍ ଓ ମେନ୍‌ସେଭିକ୍ ଉଭୟ ଦଳ ମଧ୍ୟରେ ସାଲିସ ସମାଧାନ କରିବା ଉଦ୍ଦେଶ୍ୟରେ ୧୯୦୬ ମସିହା ଏପ୍ରେଲ ମାସରେ ସୁଇଡ଼େନ୍‌ର ରାଜଧାନୀ ଷ୍ଟକହୋଲମ୍‌ଠାରେ ଗୋଟିଏ ସମ୍ମିଳନୀ ଡକା ହୋଇଥିଲା । ଷ୍ଟାଲିନ୍ ଏଥିରେ ଯୋଗ ଦେଇଥିଲେ । ରୁଷିଆର ସାମ୍ୟବାଦୀ ଗଣତନ୍ତ୍ର ଦଳ ଡୁମା ନିର୍ବାଚନ ପାଇଁ ପ୍ରାର୍ଥୀ ଛିଡ଼ା କରାଇବେ କି ନାହିଁ ଏ ବିଷୟରେ ମତଭେଦ ହେଲା । ବଲ୍‌ସେଭିକ୍‌ମାନେ ନିର୍ବାଚନ ବର୍ଜନ କରିବାର ପକ୍ଷପାତୀ ଥିଲେ । ମାତ୍ର ସମ୍ମିଳନୀରେ ମେନ୍‌ସେଭିକ୍ ଦଳର ସଂଖ୍ୟା ଅଧିକ ଥିବାରୁ ନିର୍ବାଚନରେ ଯୋଗ ଦେବାର ପ୍ରସ୍ତାବ ଗୃହୀତ ହେଲା । ବଲ୍‌ସେଭିକ୍‌ମାନେ ପରାସ୍ତ ହୋଇ ଫେରିଲେ । ସେଠାରୁ ଫେରି ଷ୍ଟାଲିନ୍ ଟିଫ୍‌ଲିସ୍‌ଠାରେ 'ଡ଼େ୍ରା' ନାମରେ ଗୋଟିଏ ଦୈନିକ ସମ୍ବାଦପତ୍ର ପ୍ରକାଶ କଲେ ଓ ସେଥିରେ ବଲ୍‌ସେଭିକ୍ ବିରୋଧୀ ଅନ୍ୟାନ୍ୟ ଦଳମାନଙ୍କୁ ତୀବ୍ର ସମାଲୋଚନା କରିବାକୁ ଲାଗିଲେ । ଏହା ଫଳରେ ଅଳ୍ପଦିନ ଭିତରେ ରୁଷିଆର ସବୁ ଅଞ୍ଚଳର ଶ୍ରମିକ ସାଧାରଣଙ୍କ ମତଗତି ବଦଳିଗଲା । ପରବର୍ଷ ଲଣ୍ଡନଠାରେ ସାମ୍ୟବାଦୀ ଗଣତନ୍ତ୍ର ଦଳର ଯେ ସମ୍ମିଳନୀ ହେଲା, ସେଥିରେ ରୁଷିଆର ବିଭିନ୍ନ ଅଞ୍ଚଳରୁ ତିନିଶହ ପ୍ରତିନିଧି ଯୋଗ ଦେଇଥିଲେ । ଅତି ଅଧିକ ସଂଖ୍ୟକ ଭୋଟରେ ବଲ୍‌ସେଭିକ୍ ଦଳର ଜୟ ହେଲା । ଲଣ୍ଡନ ସମ୍ମିଳନୀରୁ ଫେରି ବଲ୍‌ସେଭିକ୍ ଦଳର ବିପ୍ଳବୀ କାର୍ଯ୍ୟକ୍ରମକୁ କାର୍ଯ୍ୟରେ ପରିଣତ କରାଇବା ଉଦ୍ଦେଶ୍ୟରେ ଷ୍ଟାଲିନ୍ ଅର୍ଥ ସଂଗ୍ରହ କରିବାକୁ ଲାଗିଲେ । ସେ ପନ୍ଦର ହଜାର ରୋବଲ୍ (ରୁଷ ମୁଦ୍ରା) ସଂଗ୍ରହ କରି ଲେନିନ୍‌ଙ୍କ ପରାମର୍ଶ ଅନୁସାରେ ଅସ୍ତ୍ର ଶସ୍ତ୍ର ଏବଂ ଗୁଳିବାରୁଦ ବିଦେଶରୁ ଆଣାଇବାର ବ୍ୟବସ୍ଥା କଲେ । ମାତ୍ର ଯେଉଁ ଜାହାଜରେ ଏ ସବୁ

କଳାପ ଅସୁଥିଲା, ତାହା ରୁମାନଆ ଉପକୂଳରେ ବୁଡ଼ିଯିବାରୁ ଏଥର ଉଦ୍ୟମ ପଣ୍ଡ ହୋଇଗଲା ।

୧୯୦୭ ମସିହା ଜୁନ୍ ୨୩ ତାରିଖ ଦିନ ସରକାରୀ ଟଙ୍କା ଦୁଇଟି ଗାଡ଼ିରେ ବୋହାଇ ହୋଇ ଟିଫ୍ଲିସ୍ ଡାକଘରୁ ଷ୍ଟେଟ୍ ବ୍ୟାଙ୍କକୁ ନିଆଯାଉଥିବା ବେଳେ ହଠାତ୍ ଏକ ପ୍ରକାଣ୍ଡ ବୋମା ବିସ୍ଫୋରଣ ହେଲା । ପ୍ରାୟ ପଚିଶ ଜଣ ପ୍ରହରୀ ମଲେ, ଟଙ୍କାଥଳିଗୁଡ଼ିକ ଲୁଆଡ଼େ ହରଣଚାଲ ହୋଇଗଲା । ପୁଲିସ ନାନା ଅନୁସନ୍ଧାନ କରି ମଧ୍ୟ କିଛି ପତ୍ତା ପାଇଲେ ନାହିଁ । ସାମ୍ୟବାଦୀ ଗଣତନ୍ତ୍ର ଦଳର ଲଣ୍ଡନ ସମ୍ମିଳନୀରେ ସ୍ଥିର ହୋଇଥିଲା ଯେ, ସେ ଅନୁଷ୍ଠାନର ସଭ୍ୟମାନେ କୌଣସି ଆତଙ୍କବାଦୀ ହିଂସାତ୍ମକ କାର୍ଯ୍ୟ କରିବେ ନାହିଁ । ଷ୍ଟାଲିନ୍ ଏ ଘଟଣା ମୂଳରେ ଥିବାର ଅନେକେ ସନ୍ଦେହ କଲେ । ସୁତରାଂ ଦଳପତି ଲେନିନ୍‌ଙ୍କ ଠାରେ ଦଳପକ୍ଷରୁ ଦାବୀ କଲେ ଯେ, ଏ ଘଟଣାର ଅନୁସନ୍ଧାନ ହୋଇ ଉପଯୁକ୍ତ ଶାସ୍ତି ବିଧାନ ହେଉ । ଲେନିନ୍ ପ୍ରକୃତ କଥା ଆଗରୁ ଜାଣିଥିଲେ । ତଥାପି ଦଳର ଦାବୀ ଏଡ଼ି ନ ପାରି ବାଧ୍ୟ ହୋଇ ଅନୁସନ୍ଧାନ କଲେ ଏବଂ ଷ୍ଟାଲିନ୍ ଓ ଏ କାର୍ଯ୍ୟରେ ଲିପ୍ତଥିବା ତାଙ୍କର ସହକର୍ମୀମାନଙ୍କୁ ନାମତଃ ଦଳରୁ ବାହାର କରି ଦିଆହେଲା; ମାତ୍ର ପ୍ରକୃତ ପକ୍ଷେ ଏ ଶାସ୍ତି କାର୍ଯ୍ୟରେ ପରିଣତ କରାଗଲା ନାହିଁ ।

ଯାହାହେଉ ଏହା ଫଳରେ ଷ୍ଟାଲିନ୍‌କୁ ଟିଫ୍ଲିସ୍ ଛାଡ଼ିବାକୁ ପଡ଼ିଲା । ସେ ବାକୁଠାରେ ଯାଇ ରହିଲେ ଏବଂ ସେଠାରେ 'ବାକୁ ଶ୍ରମିକ' ନାମରେ ଗୋଟିଏ ଖବରକାଗଜ ବାହାର କରି ସେଠାର ଶ୍ରମିକମାନଙ୍କ ମଧ୍ୟରେ ତୁମୁଳ ପ୍ରଚାରଦ୍ୱାରା ବଲ୍‌ସେଭିକ୍ ଦଳର ପ୍ରଭାବକୁ ସୁଦୃଢ଼ କରାଇଲେ । ୧୯୦୭ ମସିହା ଶେଷବେଳକୁ

ବାକୁର ଶ୍ରମିକ ଓ କଳକାରଖାନା ମାଲିକମାନଙ୍କ ମଧ୍ୟରେ ଭୀଷଣ ବିବାଦ ଜାତ ହେଲା । ଶେଷରେ ମିଳାମିଶା ପାଇଁ ଏକ ଆଲୋଚନା ସଭା କରିବାର ସ୍ଥିର ହେଲା । ଶ୍ରମିକମାନଙ୍କ ନେତାରୂପେ ଷ୍ଟାଲିନ୍ ଦାବୀ କଲେ ଯେ, କାରଖାନା ମାଲିକମାନେ ଶ୍ରମିକ ସଙ୍ଘମାନଙ୍କୁ ସ୍ୱୀକାର କରିବେ ଓ ସେମାନଙ୍କ ମଧ୍ୟରେ କୌଣସି ପ୍ରକାର ପ୍ରଚାରରେ ବାଧା ଦେବେ ନାହିଁ । ମାଲିକମାନେ ବାଧ୍ୟହୋଇ ଏ ଦାବୀ ସ୍ୱୀକାର କଲେ । ବାକୁଠାରେ ଶ୍ରମିକମାନଙ୍କର ଏକ ପାର୍ଲିଆମେଣ୍ଟ କହିହୁଏ ଏକ ଶକ୍ତିଶାଳୀ ଅନୁଷ୍ଠାନରୂପେ କାର୍ଯ୍ୟ କଲା । ମାତ୍ର ଅଳ୍ପକାଳ ପରେ ଏହାକୁ ବେଆଇନ ଘୋଷଣା କରି ଭାଙ୍ଗି ଦିଆଗଲା ଓ ଅନେକ ସଭ୍ୟଙ୍କୁ ଗିରଫ୍‌ଦାର କରାଗଲା । ଷ୍ଟାଲିନ୍‌ଙ୍କୁ ମଧ୍ୟ ଗିରଫ୍‌ଦାର କରି ବେଇଲୋଭ୍ ଜେଲରେ ଆଠ ମାସ ଅଟକାଇ ରଖିବା ପରେ ବିଚାରରେ ତାଙ୍କୁ ଖଲାସ କରାଗଲା; ମାତ୍ର ସାଙ୍ଗେ ସାଙ୍ଗେ ରୁଷ ସରକାର ତାଙ୍କୁ ତିନିବର୍ଷ ପାଇଁ ଉତ୍ତର ରୁଷିଆର ମେରୁ ପ୍ରଦେଶରେ ନିର୍ବାସିତ ହୋଇ ରହିବାର ଆଦେଶ ଦେଲେ ।

ଏହି ନିର୍ବାସନର କେତେକ ମାସ ଆଗରୁ ଷ୍ଟାଲିନ୍ ଜର୍ଜିଆ ପ୍ରଦେଶର ଗୋଟିଏ ଯୁବତୀକୁ ବିବାହ କରିଥିଲେ । ସେ ମଧ୍ୟ ବଲ୍‌ସେଭିକ ଦଳର ସଭ୍ୟା ଥିଲେ । ୧୯୦୮ ମସିହାରେ ଷ୍ଟାଲିନ୍ ବାକୁ ଜେଲ୍‌ରେ ଥିବାବେଳେ ଏହାଙ୍କର ଯୁସା ନାମରେ ଗୋଟିଏ ପୁତ୍ର ଜନ୍ମ ହୋଇଥିଲା । ନାନା ବିପ୍ଳବାତ୍ମକ କାର୍ଯ୍ୟରେ ବ୍ୟାପୃତ ରହି ଷ୍ଟାଲିନ୍ ବହୁବର୍ଷଯାଏଁ ପତ୍ନୀପୁତ୍ରଙ୍କୁ ଦେଖିବାର ସୁବିଧା ପାଇ ନ ଥିଲେ ।

୧୯୦୯ ମସିହା ଜୁଲାଇ ମାସରେ ଷ୍ଟାଲିନ୍ ନିର୍ବାସନ ସ୍ଥାନରୁ ସେଣ୍ଟ୍‌ପିଟର୍ସବର୍ଗକୁ ଖସି ପଳାଇ ଆସିଲେ ଏବଂ ସେଠାରେ ଜଣେ

ସୈନ୍ୟବିଭାଗ କର୍ମଚାରୀଙ୍କ ଘରେ କିଛିଦିନ ଲୁଚି ରହିଲେ । ମାସକ ଭିତରେ ସେଠାରୁ ବାକୁ ସହରକୁ ପଳାଇ ଆସି ପୁଣି ବିପ୍ଲବ ସଂଗଠନ କାର୍ଯ୍ୟରେ ଲାଗିଲେ । ସେତେବେଳକୁ ସରକାରର ଦମନନୀତି ଫଳରେ ବଲ୍‌ସେଭିକ୍ ଦଳ ବଡ଼ ବିଶୃଙ୍ଖଳ ହୋଇ ପଡ଼ିଥିଲା । ଅଧିକାଂଶ ବିଶିଷ୍ଟ ଚରମବାଦୀ ବେଆଇନ ବିପ୍ଳବ ବାଟ ଛାଡ଼ିଦେଇ ଗୃହକାର ବାହାର କରୁଥିଲେ ଓ ଦଳରୁ ଅଲଗା ହୋଇ ଯାଇଥିଲେ । ୧୯୧୦ ସାଲ ଜାନୁଆରି ମାସରେ ପାରିସ୍‌ଠାରେ ସାମ୍ୟ-ବାଦୀ ଗଣତନ୍ତ୍ରଦଳର କଂଗ୍ରେସ ବସିଲା । ସେଠାରୁ ରୁଷିଆର ବିକ୍ଷିପ୍ତ ବିପ୍ଳବୀ ଗୋଷ୍ଠୀକୁ ପୁଣି ଗୋଟାଇ ସଙ୍ଘବଦ୍ଧ କରିବାପାଇଁ ଦୁଇ ଜଣ ସଭ୍ୟଙ୍କୁ ରୁଷିଆ ଭିତରକୁ ପଠାଗଲା । ସେମାନେ ଆସି ଷ୍ଟାଲିନ୍‌ଙ୍କୁ କେନ୍ଦ୍ର କମିଟିର ଜଣେ ସଭ୍ୟରୂପେ ଦଳର ସଂଗଠନ କାର୍ଯ୍ୟ କରି-ବାକୁ ପ୍ରବର୍ତ୍ତାଇଲେ; ମାତ୍ର ଏଥିପୂର୍ବରୁ ଦଳ ଭିତରୁ ତାଙ୍କୁ ଯେପରି ଶାସ୍ତିଦେଇ ବାହାର କରି ଦିଆ ହୋଇଥିଲା, ତାହା ସ୍ମରଣ କରି ସେ ଏହି ପ୍ରସ୍ତାବରେ ରାଜି ହେଲେ ନାହିଁ । ଷ୍ଟାଲିନ୍ କିନ୍ତୁ ବେଶି ଦିନ ବାହାରେ ରହି ପାରିଲେ ନାହିଁ । ନିର୍ବାସନ ସ୍ଥାନରୁ ପଳାଇ ଆସିଥିବା ଅଭିଯୋଗରେ ସେହି ମାର୍ଚ୍ଚ ମାସରେ ତାଙ୍କୁ ଗିରଫ୍‌ଦାର କରି ପାଞ୍ଚବର୍ଷ ନିର୍ବାସନ ଦଣ୍ଡ ଦିଆଗଲା ଓ ପୂର୍ବ ନିର୍ବାସନ ସ୍ଥାନ ସୋଲ୍‌ଭିଚେଗୋଡ଼୍‌ସ୍କଠାକୁ ପଠାଇ ଦିଆଗଲା । ବିପ୍ଳବ କାର୍ଯ୍ୟରୁ ଅଲଗା ହୋଇ ସ୍ଥିର ଭାବରେ ରହିବା ଷ୍ଟାଲିନ୍‌ଙ୍କର ପ୍ରକୃତି ନୁହେ । ସୁତରାଂ ସେଠାର ଅଧିବାସୀମାନଙ୍କ ଭିତରେ ସେ ଗୋଟିଏ ସାମ୍ୟବାଦୀ ଦଳ ଗଢିଲେ । ସେହିଠାରୁ ଗୁପ୍ତଭାବରେ ଖବରକାଗଜ ମାନଙ୍କରେ ମଧ୍ୟ ସେ ମେନ୍‌ସେଭିକ୍‌ମାନଙ୍କ ନୀତି ଓ କାର୍ଯ୍ୟପନ୍ଥାର ତୀବ୍ର ବିରୋଧ କରି ପ୍ରବନ୍ଧ ଆଦି ଲେଖୁଥିଲେ । ସେଠାରେ ପୁଲିଶ ନଜରବନ୍ଦୀ ସେପରି କଡ଼ା ନ ଥିବାରୁ ସେ ସେ ଅଞ୍ଚଳରେ ସ୍ଥାନେ

ସ୍ଥାନେ ସାଧାରଣ ସଭାମାନଙ୍କରେ ବକ୍ତୃତା ଦେଇ ମଧ୍ୟ ଲୋକମାନଙ୍କୁ ମତାଉଥିଲେ । ପରବର୍ଷ ମାର୍ଚ୍ଚ ମାସରେ ଷ୍ଟାଲିନ୍ ସୋଲ୍‌ଭିଚେ-ଗୋଡ୍‌ସ୍କରୁ ପୁଣି ସେଣ୍ଟ ପିଟରସ୍‌ବର୍ଗକୁ ପଳାଇ ଆସିଲେ । ଏଣିକି ନିଜର ପ୍ରାଦେଶିକ କର୍ମକ୍ଷେତ୍ର ଛାଡ଼ି ସେ ଏକ ଜାତୀୟ କର୍ମୀରୂପେ ସମଗ୍ର ରୁଷିଆର ବିପ୍ଳବ ସଂଗଠନ କାର୍ଯ୍ୟରେ ଆତ୍ମନିୟୋଗ କଲେ । ଏତେବେଳେ ପୁଣି ଥରେ କେନ୍ଦ୍ର କମିଟିର ସଭ୍ୟ ହେବା ପାଇଁ ତାଙ୍କଠାକୁ ଆହ୍ୱାନ ଆସିଲା । ଏଥର ସେ ତାହା ପ୍ରତ୍ୟାଖ୍ୟାନ ନ କରି ସେଣ୍ଟ ପିଟରସ୍‌ବର୍ଗକୁ ନିଜର କର୍ମକ୍ଷେତ୍ର କଲେ ଏବଂ ସମଗ୍ର ରୁଷିଆକୁ ସଂଗଠିତ କରିବାରେ ଲାଗିଲେ ।

ବର୍ତ୍ତମାନ ବଲ୍‌ସେଭିକ୍ ଓ ମେନ୍‌ସେଭିକ୍‌ମାନଙ୍କ ଭିତରେ ସଂଘର୍ଷ କ୍ରମେ ଅତି ଉତ୍କଟ ହୋଇ ଉଠିଲା । ଷ୍ଟାଲିନ୍ ଓ ତାହାଙ୍କର ସହକର୍ମୀମାନେ ସାମ୍ୟବାଦୀ ଗଣତନ୍ତ୍ର ସଙ୍ଘରୁ ଅଲଗାହୋଇ ସ୍ୱତନ୍ତ୍ର ବଲ୍‌ସେଭିକ୍ ଦଳ ଗଢ଼ିବାକୁ ସ୍ଥିରକଲେ । ଷ୍ଟାଲିନ୍ ଏ ଉଦ୍ୟମର ଜଣେ ପ୍ରଧାନ ସମର୍ଥକ ଥିଲେ । ବିଭିନ୍ନ ଗୁପ୍ତ ବେଶ ଧରି ସେ ରୁଷିଆର ନାନା ଅଞ୍ଚଳରେ ବୁଲି ବିକ୍ଷିପ୍ତ ବଲ୍‌ସେଭିକ୍ ଶକ୍ତିକୁ ସଂହତ କରୁଥିଲେ । ଏହି ସମୟରେ ଲେନିନ୍‌ଙ୍କ ସମ୍ପାଦିତ 'ସୋସିଆଲ୍ ଡିମୋକ୍ରାଟ୍' ପତ୍ରିକାରେ ସେ ବଲ୍‌ସେଭିକ୍ ମତର ସମର୍ଥନ କରି ଘନ ଘନ ପ୍ରବନ୍ଧମାନ ଲେଖୁଥିଲେ । ଏହି ସମୟରେ ଜାର୍ ସରକାରର ପୁଲିଶ ତାଙ୍କର ସନ୍ଧାନ ପାଇ ହଠାତ୍ ହୋଟେଲରୁ ତାଙ୍କୁ ଧରି ନେଇ ପୂର୍ବ ନିର୍ବାସନ ସ୍ଥାନକୁ ପଠାଇ-ଦେଲେ । ମାତ୍ର କିଛି ଦିନ ପରେ ସେ ପୁଣି ଖସି ପଳାଇ ଆସି ନିଜ କାମରେ ଲାଗିଲେ ।

୧୯୧୨ ମସିହା ଜାନୁଆରି ମାସରେ ପ୍ରେଗ୍‌ଠାରେ ଦଳର ସମ୍ମିଳନୀ ବସି ବଲ୍‌ସେଭିକ୍ କେନ୍ଦ୍ର କମିଟି ଗଢ଼ାହେଲା । ଷ୍ଟାଲିନ୍ ଏ କେନ୍ଦ୍ର କମିଟିରେ ରହିଲେ । ଏହି ସମ୍ମିଳନୀରେ ସ୍ଥିରହେଲା ଯେ, ବଲ୍‌ସେଭିକ୍‌ମାନେ ଚତୁର୍ଥ ଡୁମା ନିର୍ବାଚନ ପାଇଁ ପ୍ରାର୍ଥୀ ଠିଆ କରାଇବେ ଏବଂ ଦଳ ପକ୍ଷରୁ ସେଣ୍ଟ୍‌ପିଟର୍ସବର୍ଗଠାରୁ ଆଇନ-ସଙ୍ଗତ ଭାବରେ ଏକ ସମ୍ବାଦପତ୍ର ପ୍ରକାଶିତ ହେବ । ପ୍ରେଗ୍ ସମ୍ମିଳନୀ ବୈଠକର କେତେକ ମାସ ପରେ ଉତ୍ତର ସାଇବେରିଆର ଲେନା ସ୍ୱର୍ଣ୍ଣଖଣିରେ ଶ୍ରମିକମାନଙ୍କର ଏକ ପ୍ରବଳ ଧର୍ମଘଟ ହେଲା । ଡୁମାକୁ ନିର୍ବାଚିତ ହୋଇଥିବା ଧର୍ମଘଟକାରୀଙ୍କ ପ୍ରତିନିଧିମାନଙ୍କୁ ଗିରଫଦାର କରାହେଲା । ଶ୍ରମିକମାନେ ସମସ୍ତେ ଏକାଠି ହୋଇ ସେମାନଙ୍କୁ ମୁକ୍ତ କରିଦେବା ପାଇଁ ଦାବୀ କଲେ । ସରକାରୀ ପକ୍ଷ ଶ୍ରମିକମାନଙ୍କ ଉପରେ ଗୁଳି ଚଳାଇବାକୁ ସୈନ୍ୟମାନଙ୍କୁ ଆଦେଶ ଦେଲେ; ଫଳରେ ଶହ ଶହ ଧର୍ମଘଟକାରୀ ମରି ଶୋଇଲେ । ଏହାର ପ୍ରତିବାଦ ସ୍ୱରୂପ ସମଗ୍ର ରୁଷିଆର ପ୍ରାୟ ସବୁ ବଡ଼ ବଡ଼ କାରଖାନା କେନ୍ଦ୍ରମାନଙ୍କରେ ଧର୍ମଘଟ ହେଲା । ଲେନିନ୍ ଏବଂ ଷ୍ଟାଲିନ୍ ଶ୍ରମିକ ସାଧାରଣଙ୍କ ଏ ଉତ୍ତେଜନାର ଉପଯୁକ୍ତ ଉପଯୋଗ କଲେ । ଦଳପକ୍ଷରୁ 'ପ୍ରଭଦା' ଖବର କାଗଜ ଏହି ସମୟରେ ପ୍ରକାଶ ପାଇଲା । ଏ ପତ୍ରିକା ଆଇନସଙ୍ଗତ ଭାବରେ ପ୍ରକାଶିତ ହେଉଥିବାରୁ ଷ୍ଟାଲିନ୍ ଏଥିରେ ଜାର୍ ସରକାର ବିରୁଦ୍ଧରେ ପ୍ରତ୍ୟକ୍ଷ ଭାବରେ କିଛି ଲେଖିପାରୁ ନ ଥିଲେ; ମାତ୍ର ପରୋକ୍ଷ ଭାବରେ ଜନସାଧାରଣଙ୍କ ଅଭାବ ଅସୁବିଧା ଦୂର କରିବା ବାହାନାରେ ସେ ସରକାରର ଉତ୍କଟ ସମାଲୋଚନା କରିବାକୁ ଛାଡ଼ୁ ନ ଥିଲେ । ଲେନିନ୍ ଓ ଷ୍ଟାଲିନ୍‌ଙ୍କର ଜଣେ ସାଧାରଣ ବନ୍ଧୁ ମାଲିନୋଭସ୍କି 'ପ୍ରଭଦା' ସହିତ ଘନିଷ୍ଠଭାବରେ ସଂପୃକ୍ତ ଥିଲେ । ମାତ୍ର ପ୍ରକୃତରେ

ସେ ରୁଷିଆ ପୁଲିଶର ଜଣେ ଗୁପ୍ତଚର । ତାଙ୍କଠାରୁ ପୁଲିଶ ଖବର ପାଇଲେ ଯେ ଷ୍ଟାଲିନ୍ ନାନା କାଳ୍ପନିକ ନାମରେ 'ପ୍ରଭଦା'ରେ ବରାବର ଲେଖୁଛନ୍ତି । ସୁତରାଂ ପୁଲିଶ ଷ୍ଟାଲିନ୍‌ଙ୍କୁ ଗିରଫ୍‌ଦାର କରି ସାଇବେରିଆର ନାରିମ୍ ଜିଲ୍ଲାକୁ ନିର୍ବାସନ କଲେ । ଷ୍ଟାଲିନ୍ କିନ୍ତୁ ପୂର୍ବଥରମାନଙ୍କ ପରି ଅଳ୍ପ ସମୟ ଭିତରେ ସେଠାରୁ ଖସି ପଳାଇ ଆସିଲେ ।

ଷ୍ଟାଲିନ୍ ରାଜଧାନୀରେ ପହଞ୍ଚିଲା ବେଳକୁ ଡୁମାର ନିର୍ବାଚନ ପ୍ରଚାର କାର୍ଯ୍ୟ ଖୁବ୍ ଜୋରସୋରରେ ଚାଲିଛି । ସେ ଚାରି ମାସକାଳ ସେଣ୍ଟ୍‌ପିଟର୍ସବର୍ଗରେ ରହି 'ପ୍ରଭଦା' ସମ୍ବାଦପତ୍ର ଦ୍ୱାରାରେ ନିଜ ଦଳର ପ୍ରଚାର ଚଳାଇଲେ । ଏହି ସମୟରେ 'ପ୍ରଭଦା'କୁ ବାରମ୍ବାର ବନ୍ଦ କରି ଦିଆଯାଉଥିଲା । ମାତ୍ର ପରଦିନ ତାହା ପୁଣି ଏକ ନୂଆ ନାମରେ ନୂଆ ଜଣକୁ ସମ୍ପାଦକ କରି ପ୍ରକାଶ ପାଉଥିଲା । ଶ୍ରମିକ ସାଧାରଣ ଇଚ୍ଛା କରୁଥିଲେ ଯେ, ଅନ୍ତତଃ ନିର୍ବାଚନ ଲଢ଼େଇ ପାଇଁ ବଲ୍‌ସେଭିକ୍ ଓ ମେନ୍‌ସେଭିକ୍ ଦଳ ଏକ ହୋଇ ଅନ୍ୟମାନଙ୍କ ସଙ୍ଗେ ଲଢ଼ନ୍ତୁ; ମାତ୍ର ଷ୍ଟାଲିନ୍ ତାହା କରାଇଦେଲେ ନାହିଁ । ନିର୍ବାଚନରେ ସାମ୍ୟବାଦୀ ଗଣତନ୍ତ୍ରବାଦୀମାନଙ୍କ ତରଫରୁ ତେର ଜଣ ଡୁମାକୁ ନିର୍ବାଚିତ ହେଲେ । ସେଥିଭିତରୁ ଛଅ ଜଣ ବଲ୍‌ସେଭିକ୍ ଦଳର । ବଲ୍‌ସେଭିକ୍ ପ୍ରତିନିଧିମାନେ ଡୁମାରେ ସେମାନଙ୍କ କାର୍ଯ୍ୟକଳାପ ଲାଗି ଷ୍ଟାଲିନ୍‌ଙ୍କଦ୍ୱାରା ସମ୍ପୂର୍ଣ୍ଣରୂପେ ପରିଚାଳିତ ହେଉଥିଲେ ।

ଡୁମାରେ ବଲ୍‌ସେଭିକ୍ ସଭ୍ୟମାନଙ୍କ କାର୍ଯ୍ୟକ୍ରମ ସ୍ଥିର କରିବା ଉଦ୍ଦେଶ୍ୟରେ ୧୯୧୩ ସାଲ୍ ଜାନୁୟାରି ମାସରେ ଅଷ୍ଟ୍ରିଆର କ୍ରାକୋ ସହରଠାରେ ବଲ୍‌ସେଭିକ୍ ଦଳର ଏକ ସମ୍ମିଳନୀ

ହୋଇଥିଲା । ଷ୍ଟାଲିନ୍ ଏଥିରେ ଯୋଗଦେବା ପରେ ଲେନିନଙ୍କ ପାଖରେ ଭିଏନାଠାରେ ପ୍ରାୟ ଦୁଇମାସ ରହିଥିଲେ । ଏହି ଅବସରରେ ସେ ଲେନିନ୍‌ଙ୍କର ଗୋଟିଏ ଜୀବନଚରିତ ଲେଖିଥିଲେ । ମାର୍ଚ୍ଚ ମାସରେ ଷ୍ଟାଲିନ୍ ରୁଷିଆକୁ ଫେରି ଦେଖିଲେ ଯେ ପୁଲିଶ ବରାବର ତାଙ୍କ ପିଛା ଧରିଛନ୍ତି । ସୁତରାଂ ଡୁମାର ଜଣେ ସଭ୍ୟଙ୍କ ଘରେ ସେ ଆଶ୍ରୟ ନେଲେ ଏବଂ ସେହିଠାରେ ଅନେକ ଦିନଯାଏ 'ଅଦୌ ବାହାରକୁ ନ ବାହାରି ଲୁଚି ରହିଲେ । ଏହି ସମୟରେ 'ପ୍ରଭଦା' ଖବରକାଗଜ ପାଇଁ ଅର୍ଥ ସଂଗ୍ରହ କରିବା ଉଦ୍ଦେଶ୍ୟରେ ବଲ୍‌ସେଭିକ୍ ଦଳର ଲୋକେ ଗୋଟିଏ ସଙ୍ଗୀତ ପ୍ରଦର୍ଶନୀର ଆୟୋଜନ କରିଥିଲେ । ଷ୍ଟାଲିନ୍ ଲୁଚିକରି ସେଠାକୁ ଯାଇଥିଲେ । ମାତ୍ର ପୁଲିଶ ଗୁପ୍ତଚର ମାଲିନୋଭ୍‌ସ୍କିଙ୍କଠାରୁ ଆଗରୁ ଖବର ପାଇ ପୁଲିଶ ଲୋକେ ସେଠାରେ ବହୁସଂଖ୍ୟାରେ ଛଦ୍ମବେଶରେ ଜଗି ରହିଥିଲେ । ଏଥର ସୁବିଧା ପାଇ ଷ୍ଟାଲିନ୍ ରଙ୍ଗମଞ୍ଚର ପଛଦ୍ୱାରବାଟେ ପଳାଇ ଯିବାର ଉଦ୍ୟମ କଲାବେଳେ ପୁଲିଶ ତାଙ୍କୁ ଧରିନେଇ ଜେଲରେ ପୂରାଇଦେଲେ । ପିଟର୍‌ସ୍‌ବର୍ଗ ଜେଲରେ କେତେକ ମାସ ରହିବା ପରେ ତାଙ୍କୁ ଉତ୍ତରମେରୁ ଅଞ୍ଚଳର ଟୁରୁଖାଁସ୍କ ବ୍ଲକକୁ ଚାରି ବର୍ଷପାଇଁ ନିର୍ବାସିତ କରାଗଲା ଏବଂ କଡ଼ା ପୁଲିଶ ପହରାର ବ୍ୟବସ୍ଥା କରାଗଲା । ଏହିଠାରେ ୧୯୧୭ ମସିହା ପର୍ଯ୍ୟନ୍ତ ତିନି ବର୍ଷକାଳ ଏହି ଭୀଷଣ ଶୀତ ଅଞ୍ଚଳରେ ତାଙ୍କୁ ରହିବାକୁ ପଡ଼ିଥିଲା ।

ଏ ମଧ୍ୟରେ ୧୯୧୪ ମସିହା ଅଗଷ୍ଟ ମାସରେ ଇଉରୋପୀୟ ମହାଯୁଦ୍ଧ ଆରମ୍ଭ ହୋଇଗଲା । ରୁଷିଆ ଇଂଲଣ୍ଡ ଓ ଫ୍ରାନ୍‌ସ୍ ପକ୍ଷରେ ରହି ଜର୍ମାନୀ ବିରୁଦ୍ଧରେ ଲଢ଼ିଲା । ଇଉରୋପର

ଅନ୍ୟାନ୍ୟ ଦେଶର ସାମ୍ୟବାଦୀମାନେ ଯୁଦ୍ଧର ସମର୍ଥନ କରି ନିଜ ନିଜ ଦେଶର ସରକାରମାନଙ୍କୁ ସେଥିପାଇଁ ସାହାଯ୍ୟ କଲେ । ମାତ୍ର ରୁଷିଆରେ ଅଧିକାଂଶ ସାମ୍ୟବାଦୀ ଲେନିନ୍‌ଙ୍କ ନେତୃତ୍ୱରେ ମୂଳରୁ ଏ ସାମ୍ରାଜ୍ୟବାଦୀ ଯୁଦ୍ଧର ତୀବ୍ର ବିରୋଧ କରି ଆସୁଥିଲେ । ଯୁଦ୍ଧର ଦ୍ୱିତୀୟ ବର୍ଷ ରୁଷିଆର ଡୁମା ମଧ୍ୟ ଜାର ସରକାର ବିରୁଦ୍ଧରେ ଗଲା । ଜାର ଥରକୁଥର ଯେଉଁମାନଙ୍କୁ ମନ୍ତ୍ରୀ ନିଯୁକ୍ତ କରୁଥାନ୍ତି, ଡୁମା ବାରମ୍ବାର ସେମାନଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଗ୍ରହଣ କରି ସେମାନଙ୍କୁ ଇସ୍ତଫା ଦେବାକୁ ବାଧ୍ୟ କରୁଥାଏ । ଏତେବେଳେ ରୁଷିଆର ସବୁ ପ୍ରାପ୍ତବୟସ୍କ କର୍ମକ୍ଷମ ଲୋକଙ୍କୁ ସୈନ୍ୟବିଭାଗରେ ଯୋଗ ଦେବାକୁ ବାଧ୍ୟ କରାଯାଉଥିଲା । ଷ୍ଟାଲିନ୍‌ଙ୍କୁ ମଧ୍ୟ ଡାକରା ଆସିଲା; ମାତ୍ର ସେ ଜାଣିଶୁଣି ନିଜର ବାଁ ହାତରେ ଗୋଟାଏ କ୍ଷତ କରାଇ କୌଣସି-ମତେ ଡାକ୍ତର ପରୀକ୍ଷାରେ ଅବ୍ୟାହତି ପାଇଗଲେ ।

ରୁଷିଆର ଜାର ସରକାର ସାଧାରଣ ଲୋକଙ୍କର ମତାମତ, ଅଭାବ ଅଭିଯୋଗ ଉପଲବ୍ଧି ନ କରି କେବଳ କ୍ଷମତାବଳରେ ନାନା ଆଦେଶ ଜାରି କରି ଲକ୍ଷ ଲକ୍ଷ ଲୋକଙ୍କୁ ଯୁଦ୍ଧକ୍ଷେତ୍ରକୁ ବାହାରିବାକୁ ଲାଗିଲେ । ସୈନ୍ୟମାନଙ୍କୁ ଯଥେଷ୍ଟ ପରିମାଣରେ ଖାଦ୍ୟଦ୍ରବ୍ୟ ଓ ପୋଷାକପରିଚ୍ଛଦ ଆଦି ଠିକମତ ଯୋଗାଇ ଦିଆଗଲା ନାହିଁ । ସୈନ୍ୟମାନଙ୍କ ଭିତରେ କ୍ରମେ ଅସନ୍ତୋଷ ବଢ଼ିଲା । ଏଣେ ଯୁଦ୍ଧ ପରିସ୍ଥିତି ହେତୁ ଖାଦ୍ୟ ଓ ଅନ୍ୟାନ୍ୟ ବ୍ୟବହାର୍ଯ୍ୟର ଅଭାବ ଏବଂ ମୂଲ୍ୟବୃଦ୍ଧି ଫଳରେ ରୁଷିଆର ଦରିଦ୍ର ସାଧାରଣ, କୃଷକ ଓ ଶ୍ରମିକମାନେ ମଧ୍ୟ ସରକାର ବିରୁଦ୍ଧରେ ମାତି ଉଠିଲେ । ବିପ୍ଳବୀ ନେତାମାନେ ସେତେବେଳକୁ କାଏ

ଅନ୍ୟ ଦେଶରେ; କିଏ ବା ନିଜ ଦେଶର ସାଇବେରିଆ ପ୍ରଭୃତି ଦୂର ଅଞ୍ଚଳରେ ନିର୍ବାସିତ ହୋଇ ରହିଥାନ୍ତି; ମାତ୍ର ଲୋକେ କୌଣସି ନେତୃତ୍ୱର ପରିଚାଳନାକୁ ଅପେକ୍ଷା ନ ରଖି ହଠାତ୍ ବିପ୍ଲବ କରି ଉଠିଲେ । ୧୯୧୭ ମସିହା ମାର୍ଚ୍ଚ ମାସରେ ଜାର୍ ଦ୍ୱିତୀୟ ନିକୋଲାସ୍ ବାଧ୍ୟ ହୋଇ ରାଜଗାଦି ଛାଡ଼ି ଦେଲେ । କେରେନ୍‌ସ୍କି ନାମରେ ଜଣେ ନରମ ମେନ୍‌ସେଭିକ୍ ଦଳର ନେତାଙ୍କୁ ପ୍ରେସିଡେଣ୍ଟ କରି ସ୍ୱାଧୀନ ରୁଷିଆର ସାମ୍ୟବାଦୀ ଗଣତନ୍ତ୍ର ସରକାର ଗଢ଼ାହେଲା । ରୁଷିଆରେ ଜାର୍ ରାଜତ୍ୱ ଲୋପ ହୋଇଥିବା ଖବର ପାଇ ଲେନିନ୍, ଟ୍ରଟ୍‌ସ୍କି ପ୍ରଭୃତି ବରିଷ୍ଠ ବିପ୍ଳବୀ ନେତାମାନେ ସାଙ୍ଗେ ସାଙ୍ଗେ ରୁଷିଆକୁ ଫେରି ଆସିଲେ । ଷ୍ଟାଲିନ୍ ମଧ୍ୟ ତାଙ୍କର ନିର୍ବାସିତ ସ୍ଥାନ ଉତ୍ତର ରୁଷିଆରୁ ପେଟ୍ରୋଗ୍ରାଡ୍‌କୁ ଫେରି ବିପ୍ଳବୀ ଦଳର ମୁଖପତ୍ର 'ପ୍ରାଭଦା'ର ପରିଚାଳନାଭାର ଗ୍ରହଣ କଲେ । ଲେନିନ୍ ପହଞ୍ଚିବା ପୂର୍ବରୁ ଷ୍ଟାଲିନ୍ ଓ ତାଙ୍କ ସହକର୍ମୀମାନେ ବସି ନବଗଠିତ ଅସ୍ଥାୟୀ ସରକାର ସହିତ ସହଯୋଗ କରିବେ ବୋଲି ସ୍ଥିର କରିଥିଲେ । ମାତ୍ର ଆଲୋଚନାର ଶେଷଦିନ ଲେନିନ୍ ଆସି ପହଞ୍ଚିବା ମାତ୍ରେ ତାଙ୍କର ଅକାଟ୍ୟ ଯୁକ୍ତି ଶୁଣି ଏ ନିଷ୍ପତ୍ତି ବଦଳିଗଲା । ବଲ୍‌ସେଭିକ୍‌ମାନେ ଧନିକ ଶ୍ରେଣୀର ପକ୍ଷପାତୀ ଅସ୍ଥାୟୀ ସରକାରକୁ ଭାଙ୍ଗି ପ୍ରକୃତ ସାମ୍ୟବାଦୀ ଗଣତନ୍ତ୍ର ସରକାର ଅବିଳମ୍ବେ ପ୍ରତିଷ୍ଠା କରିବାକୁ ବଦ୍ଧପରିକର ହେଲେ ।

ସେହି ବର୍ଷ ମେ ମାସରେ ନିଖିଳ ରୁଷିଆ ବଲ୍‌ସେଭିକ୍ ସମ୍ମିଳନୀ ପେଟ୍ରୋଗ୍ରାଡ୍‌ଠାରେ ବସିଲା । ଲେନିନ୍‌ଙ୍କର ବିପ୍ଳବ ପ୍ରସ୍ତାବକୁ ଷ୍ଟାଲିନ୍ ସମର୍ଥନ କଲେ ଏବଂ ତାହା ସର୍ବସମ୍ମତିକ୍ରମେ

ସ୍ଥାପିତ ହେଲା । ଦଳର ଗୋଟିଏ କେନ୍ଦ୍ର କମିଟି ଗଢ଼ା ହେଲା । ତିନି ଜଣ ସେକ୍ରେଟରୀଙ୍କ ଭିତରୁ ଷ୍ଟାଲିନ୍ ଜଣେ ସେକ୍ରେଟରୀ ରୂପେ ନିର୍ବାଚିତ ହେଲେ । ଜାର ରାଜତ୍ୱ ଲୋପ ପାଇବା-ପରେ ଧନିକ ଶ୍ରେଣୀର ପ୍ରତିନିଧିବହୁଳ ଡୁମା ଏବଂ ଶ୍ରମିକ କୃଷକ ଶ୍ରେଣୀର ପ୍ରତିନିଧିସଭା ସୋଭିଏଟ୍ ମଧ୍ୟରେ ଶାସନକ୍ଷମତା ନିଜ ହାତକୁ ନେବାପାଇଁ ଟଣାଓଟରା ଲାଗିଥାଏ । ଏହି ଦୁଇଟି ବିରୋଧୀ ଶକ୍ତି ମଧ୍ୟରେ କେରେନସ୍କିଙ୍କ ଅସ୍ଥାୟୀ ସରକାର କୌଣସି ସମାଧାନ କରିପାରିଲେ ନାହିଁ । ଲେନିନ୍, ଷ୍ଟାଲିନ୍ ଓ ଟ୍ରଟସ୍କି ଗୁପ୍ତ ଭାବରେ ଭିତରେ ବିପ୍ଳବୀମାନଙ୍କୁ ସଂଗଠିତ କରି ୧୯୧୭ ମସିହା ନଭେମ୍ବର ୭ ତାରିଖ ଦିନ ଅତର୍କିତ ଭାବରେ ହଠାତ୍ ବିଦ୍ରୋହ କରି ଉଠିଲେ । ଟ୍ରଟସ୍କିଙ୍କ ସେନାପତିତ୍ୱରେ ବଲ୍‌ସେଭିକ୍ ଦଳ ସରକାରୀ ସୈନ୍ୟଙ୍କୁ ଆକ୍ରମଣ କଲେ । ପ୍ରଧାନ ପ୍ରଧାନ ମନ୍ତ୍ରୀମାନଙ୍କ ମଧ୍ୟରୁ କାହାକୁ ଗିରଫ୍‌ଦାର କଲେ କାହାକୁ ବା ହତ୍ୟା କରିଦେଲେ । ଅବଶିଷ୍ଟ ମନ୍ତ୍ରୀ ଓ ବଡ଼ ବଡ଼ କର୍ମଚାରୀମାନେ କିଏ କୁଆଡ଼େ ଛିନ୍ନଭିନ୍ନ ହୋଇ ପଳାଇଗଲେ । ସାମାନ୍ୟ କେତେଘଣ୍ଟା ମଧ୍ୟରେ ରାଜଧାନୀ ପେଟ୍ରୋଗାଡ଼ ସହର ବଲ୍‌ସେଭିକ୍‌ମାନଙ୍କ ହସ୍ତଗତ ହେଲା । ସାଙ୍ଗେ ସାଙ୍ଗେ ଲେନିନ୍‌ଙ୍କୁ ମୁଖିଆ କରି ସୋଭିଏଟ୍ ସରକାର ଗଢ଼ାହେଲା । ସେତେବେଳେ କିନ୍ତୁ ମନ୍ତ୍ରିସଭାରେ ଷ୍ଟାଲିନ୍ କୌଣସି ସ୍ଥାନ ପାଇ ନ ଥିଲେ । ସୋଭିଏଟ୍ ସରକାର ନିଜର ପ୍ରଥମ କାର୍ଯ୍ୟରୂପେ ଏକ ସରକାରୀ ଇସ୍ତାହାର ଜାରି କରି ରୁଷିଆର ସମସ୍ତ ଜମିବାଡ଼ି କୃଷକମାନଙ୍କୁ ଦେଇଦେଲେ । ଯେଉଁ ସେନାପତି ବା ବଇଦେଶୀ କର୍ମଚାରୀମାନେ ନୂତନ ସରକାରର କର୍ତ୍ତୃତ୍ୱ ସ୍ୱୀକାର ବା ତାହାର ଆଦେଶ ପାଳନ ନ କଲେ,

ସେମାନଙ୍କୁ ସାଙ୍ଗେ ସାଙ୍ଗେ ବାହାର କରି ଦିଆଯାଇ ନୂଆ ନୂଆ ସେନାପତି ଓ କର୍ମଚାରୀ ନିଯୁକ୍ତ କରାଗଲା । ଜର୍ମାନୀ ସହିତ ଯୁଦ୍ଧ ସାଙ୍ଗେ ସାଙ୍ଗେ ବନ୍ଦ କରିବା ପାଇଁ ବଲ୍‌ସେଭିକ୍ ସରକାର ପ୍ରସ୍ତାବ କଲେ । ରୁଷ ସରକାରର ଦୁର୍ବଳ ଅବସ୍ଥା ଦେଖି ଜର୍ମାନୀ ସନ୍ଧିପାଇଁ ବଡ଼ କଠୋର ଏବଂ ଅପମାନକର ସର୍ତ୍ତିମାନ ଦାବୀ କଲା । ସାମରିକ ଅଫିସରମାନେ ଏ ସର୍ତ୍ତ ଗ୍ରହଣ କରିବାକୁ ପ୍ରଥମେ ରାଜି ନ ଥିଲେ; ମାତ୍ର ଯେ କୌଣସିମତେ ଜର୍ମାନୀ ସହିତ ସନ୍ଧି କରି ଦେଶରେ ଶାନ୍ତି ପ୍ରତିଷ୍ଠା କରିବା-ପାଇଁ ଲେନିନ୍ ଜିଦ୍ ଧରିବାରୁ, ଶେଷରେ ଜର୍ମାନୀ ସହିତ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା ଏବଂ ଯୁଦ୍ଧ ବନ୍ଦ ହେଲା ।

ରୁଷିଆର ବହୁଳ ଜାତିର ଲୋକଙ୍କ ନ୍ୟାଯ୍ୟ ଦାବୀ ଆଲୋଚନା କରି ପରସ୍ପର ମଧ୍ୟରେ ସଖ୍ୟ ଏବଂ ସଦ୍ଭାବ ଆଣିବା ପାଇଁ ସୋଭିଏଟ୍ ସରକାର ଏକ ସ୍ୱତନ୍ତ୍ର ବିଭାଗ ସୃଷ୍ଟି କଲେ । ଷ୍ଟାଲିନ୍‌ଙ୍କୁ ଏ ବିଭାଗର କମିସାର୍ ବା ମନ୍ତ୍ରୀରୂପେ ନିଯୁକ୍ତ କରାଗଲା । ସେ ରୁଷିଆର ଏ ଜଟିଳ ସମସ୍ୟାକୁ ଯେପରି ନ୍ୟାୟପରାୟଣତାର ସହିତ ସମାଧାନ କରି ବହୁଳ ଜାତି ଓ ପ୍ରଦେଶର ଅଧିବାସୀମାନଙ୍କ ମଧ୍ୟରେ ଶାନ୍ତି ସଦ୍ଭାବ ପ୍ରତିଷ୍ଠା କରାଇ ପାରିଥିଲେ, ତାହା ତାଙ୍କର ରାଜନୀତିକ ବିଚକ୍ଷଣତା ଓ ଦୂରଦୃଷ୍ଟିର ପରିଚାୟକ । ରୁଷିଆରେ ୧୮୨ ଗୋଟି ବହୁଳ ଭାଷାଭାଷୀ ଜାତି ଏବଂ ସଂପ୍ରଦାୟ ଅଛନ୍ତି । ବହୁଳ ଭାଷା ଏବଂ ସଂସ୍କୃତିକୁ ଆତ୍ମୋନ୍ନତିର ପୂର୍ଣ୍ଣ ସୁବିଧା ଏବଂ ସୁଯୋଗ ଦେବା ଉଦ୍ଦେଶ୍ୟରେ ଷ୍ଟାଲିନ୍ ସମଗ୍ର ଦେଶକୁ ଅନେକଗୁଡ଼ିଏ ସ୍ୱତନ୍ତ୍ର ସ୍ଥାନୀୟ ସଂସ୍ଥା ବା ସୋଭିଏଟ୍‌ରେ ବିଭାଗ କରିଦେଲେ ।

ପ୍ରତ୍ୟେକର ଭାଷାକୁ ପୂର୍ଣ୍ଣ ସ୍ୱୀକୃତି ଦେବାଦ୍ୱାରା ସମସ୍ତେ ନିଜ ନିଜ ଭାଷାରେ ଶିକ୍ଷାଲାଭ କରିବାକୁ ପୂର୍ଣ୍ଣ ସୁବିଧା ପାଉଛନ୍ତି । ବିଭିନ୍ନ ଜାତି ଏବଂ ଗୋଷ୍ଠୀକୁ ସ୍ୱତନ୍ତ୍ର କରିଦେବା ଫଳରେ ସେମାନଙ୍କ ମଧ୍ୟରେ ପରସ୍ପର ଭେଦଭାବ ନ ବଢ଼ି ବରଂ ଏକ ସମ୍ବନ୍ଧ ବନ୍ଧନରେ ଗ୍ରନ୍ଥି ହୋଇ ରହିବା ପାଇଁ ସମସ୍ତଙ୍କର ଆକାଂକ୍ଷା ଏବଂ ଆଗ୍ରହ ବଢ଼ିଛି । ପ୍ରତ୍ୟେକ ମିଳିତ ଗଣତନ୍ତ୍ର ଇଚ୍ଛା କଲେ କେନ୍ଦ୍ର ସୋଭିଏତ ଗଣତନ୍ତ୍ରରୁ ପୃଥକ୍ ହୋଇ ପାରିବାର ଅଧିକାର ଦିଆ ଯାଇଥିଲେ ମଧ୍ୟ ସମସ୍ତଙ୍କର ଲକ୍ଷ୍ୟ ଏବଂ ଉଦ୍ଦେଶ୍ୟ ଏକ ଥିବାରୁ ସେମାନେ ପୁଞ୍ଜିପତି ସାମ୍ରାଜ୍ୟବାଦୀ ଶତ୍ରୁମାନଙ୍କ ବିରୁଦ୍ଧରେ ଶକ୍ତିଶାଳୀ ହୋଇ ଠିଆ ହେବାପାଇଁ ସମ୍ପୂର୍ଣ୍ଣ ଏକତାବଦ୍ଧ ହୋଇ ରହିଛନ୍ତି । ଟ୍ରଟ୍‌ସ୍କି ସୋଭିଏଟ ସରକାରର ଯୁଦ୍ଧମନ୍ତ୍ରୀ ଓ ପ୍ରଧାନ ସେନାପତି ହେଲେ ।

ବଲ୍‌ସେଭିକ୍ ବିପ୍ଳବରେ ଉତ୍ସନ୍ନ-ସ୍ୱତ୍ୱ ହୋଇ ରୁଷିଆର ଜମିଦାର ଏବଂ ପୁଞ୍ଜିପତିମାନେ ଇଉରୋପର ଅନ୍ୟ ଦେଶର ପୁଞ୍ଜିପତି ସାମ୍ରାଜ୍ୟବାଦୀ ସରକାରମାନଙ୍କ ଗୁପ୍ତ ସାହାଯ୍ୟରେ ସୋଭିଏଟ୍ ସରକାରର ମୂଳୋତ୍ପାଟନ କରିବାପାଇଁ ପ୍ରବଳ ଉଦ୍ୟମ କଲେ । ରୁଷିଆରେ ଗୁଣି ଗୁଣି ସବୁ ଅଞ୍ଚଳରେ ଅନ୍ତର୍ଯୁଦ୍ଧ ଲାଗିଗଲା । ଇଂଲଣ୍ଡ, ଫ୍ରାନ୍‌ସ୍ ପ୍ରଭୃତି ଇଉରୋପୀୟ ଶତ୍ରୁମାନେ ଅସ୍ତ୍ରଶସ୍ତ୍ର ଏବଂ ସୈନ୍ୟସାମନ୍ତ ପଠାଇ ସାମ୍ୟବାଦୀ ସରକାର ବିରୋଧୀ ରୁଷିଆର ପୁଞ୍ଜିପତିମାନଙ୍କୁ ପ୍ରକାଶ୍ୟଭାବରେ ସାହାଯ୍ୟ କଲେ । ରୁଷିଆର ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ ଚାରିଆଡ଼େ ଯୁଦ୍ଧ ଲାଗିଗଲା । ୧୯୧୮ ସାଲ ଜୁନ୍ ମାସରେ ଷ୍ଟାଲିନ୍‌ଙ୍କୁ ନିମ୍ନ ଭଲ୍‌ଗା ଅଞ୍ଚଳକୁ ଯୁଦ୍ଧ ପରିଚାଳନା କରିବାକୁ ପଠାଗଲା । ସେ ସେଠାରେ

ସୋଭ୍ଏଟ୍ ପକ୍ଷ ସେନାମାନଙ୍କର ବିଶୃଙ୍ଖଳ ଅବସ୍ଥା ଦେଖି ଟ୍ରଟ୍ସ୍କି ଦ୍ୱାରା ନିଯୁକ୍ତ ହୋଇଥିବା କେତେଜଣ ଉପରସ୍ଥ ସାମରି କର୍ମଚାରୀଙ୍କୁ ଲେନିନ୍‌ଙ୍କ ଅନୁମତି ନେଇ କାର୍ଯ୍ୟରୁ ବାହାର କରି ଦେଲେ । ଏହା ଫଳରେ ଟ୍ରଟ୍ସ୍କି ଓ ଷ୍ଟାଲିନ୍‌ଙ୍କ ଭିତରେ ଥିବା ମନାନ୍ତର ଅଧିକ ବଢ଼ିଗଲା । ଏହା ମଧ୍ୟରେ ଋଷିଆର ଉତ୍ତର-ପୂର୍ବ ଅଞ୍ଚଳରେ ଯୁଦ୍ଧର ଅବସ୍ଥା ବିପଜ୍ଜନକ ହୋଇ ଉଠିଲା । ପେର୍ମ ସହର ଶତ୍ରୁପକ୍ଷ ଦଖଲ କରି ନେଇଥିଲେ । ସେଠାର ଅବସ୍ଥା ସମ୍ଭାଳି ସୈନ୍ୟଫୌଜକୁ ଶୃଙ୍ଖଳିତ ଓ ପୁନର୍ଗଠିତ କରିବାର ଭାର ଷ୍ଟାଲିନ୍‌ଙ୍କୁ ଦିଆଗଲା ଏବଂ ସେ ବିଶେଷ ଦକ୍ଷତାର ସହିତ ତାହା ସମ୍ପାଦନ କଲେ । ପୂର୍ବାଞ୍ଚଳ ଯୁଦ୍ଧକ୍ଷେତ୍ରରେ ସେତେବେଳେ ନିଜେ ପ୍ରଧାନ ସେନାପତି ଟ୍ରଟ୍ସ୍କି ଯୁଦ୍ଧ ପରିଚାଳନା କରୁଥିଲେ ସେ ତାଙ୍କର କ୍ଷମତା ଅତିକ୍ରମ କରି କେତେ ଜଣ ପ୍ରଧାନ ବଲ୍‌ସେଭିକ୍ କର୍ମଚାରୀଙ୍କୁ ବିନା ତଦନ୍ତରେ ସାମରିକ ବିଚାରରେ ଦଣ୍ଡ ଦେଲେ । ସେଠା ଫୌଜର ସେନାପତିଙ୍କୁ ସେ କାର୍ଯ୍ୟରୁ ବାହାର କରିଦେବା ଦ୍ୱାରା ଯୁଦ୍ଧର ଅବସ୍ଥା ସାଂଘାତିକ ହୋଇ ଉଠିଲା । ଏହା ଫଳରେ ବଲ୍‌ସେଭିକ୍ ଦଳର ବହୁସଂଖ୍ୟକ ମୁଖ୍ୟ ବ୍ୟକ୍ତି ଟ୍ରଟ୍ସ୍କିଙ୍କ ପ୍ରତି ବିରକ୍ତ ହୋଇ କ୍ରମେ ଷ୍ଟାଲିନ୍‌ଙ୍କ ଆଡ଼କୁ ଚାଲିଲେ । ଟ୍ରଟ୍ସ୍କିଙ୍କ ଯୁଦ୍ଧକୌଶଳ ସଫଳ ନ ହେଉ ଥିବାରୁ ଷ୍ଟାଲିନ୍‌ଙ୍କୁ ପୂର୍ଣ୍ଣ କ୍ଷମତା ଦିଆଯାଇ ସେନାପତି ନିଯୁକ୍ତ କରାଗଲା । ସେ ବିଶେଷ ଦକ୍ଷତା ଓ ସଫଳତାର ସହିତ ଯୁଦ୍ଧ ପରିଚାଳନା କରି ସାମାନ୍ୟ କେତେ ମାସ ଭିତରେ ଗୋଟିଏ ପରେ ଗୋଟିଏ ସବୁ ରଣକ୍ଷେତ୍ରରେ ସୋଭିଏଟ୍‌ବାହିନୀର ବିଜୟ ହାସଲ କଲେ । ଋଷିଆର ଧନିକ ବିଦ୍ରୋହୀମାନେ ଛନ୍ଦଭଙ୍ଗ ହୋଇ ଦେଶାନ୍ତରକୁ ପଳାଇ ଗଲେ ।

ବହୁବର୍ଷ ହେଲା ଷ୍ଟାଲିନ୍ ନିଜର ପତ୍ନୀଙ୍କଠାରୁ ବିଚ୍ଛିନ୍ନ ହୋଇ ରହିଥିଲେ । ଏହି ଅନ୍ତର୍ଯୁଦ୍ଧ ଲାଗିଥିବା ବେଳେ ୧୯୧୯ ମସିହାରେ ସେ ତାଙ୍କର ପୂର୍ବ ପତ୍ନୀଙ୍କୁ ଛାଡ଼ପତ୍ର ଦେଲେ ଏବଂ ନିଜର ଜଣେ ବନ୍ଧୁଙ୍କ କନ୍ୟା ନାଦିଆ ଆଲିଲୁଏଭା ନାମକ ଗୋଟିଏ ସପ୍ତଦଶ ବର୍ଷୀୟା ବାଳିକାକୁ ବିବାହ କଲେ । ଷ୍ଟାଲିନ୍ ଏହାଙ୍କୁ ଖୁବ୍ ଭଲ ପାଉଥିଲେ । ୧୯୩୨ ମସିହାରେ ନାଦିଆଙ୍କର ହଠାତ୍ ମୃତ୍ୟୁ ହେଲା । କେହି କେହି ଅଭିଯୋଗ କରନ୍ତି ଯେ, ବଲ୍‌ସେଭିକ୍ ଦଳର କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ପ୍ରତି ଷ୍ଟାଲିନ୍‌ଙ୍କ ବ୍ୟବହାରରେ କ୍ଷୁଣ୍ଣ ହୋଇ ସେ ଆତ୍ମହତ୍ୟା କଲେ; ମାତ୍ର ବାସ୍ତବରେ ସେ କଣ୍ଠନଳୀ ରୋଗଶଯ୍ୟାରେ ପଡ଼ି ପ୍ରାଣ ହରାଇଥିଲେ । ଷ୍ଟାଲିନ୍‌ଙ୍କ ପ୍ରଥମ ଭାର୍ଯ୍ୟାଙ୍କର ଗୋଟିଏ ପୁତ୍ର ଏବଂ ଦ୍ୱିତୀୟ ଭାର୍ଯ୍ୟାଙ୍କର ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଅଛନ୍ତି ।

ଧନୀ ଓ ବିପ୍ଳବୀମାନଙ୍କ ସହିତ ଅନ୍ତର୍ଯୁଦ୍ଧରେ ଜୟଲାଭ କରିବା ପରେ ସାମ୍ୟବାଦୀ ସରକାର ବିଭିନ୍ନ ବିଭାଗର ଦୋଷ, ତ୍ରୁଟି, ଲାଞ୍ଚ, ମିଛ ଆଦି ଅନୁସନ୍ଧାନ କରି ତାହାର ପ୍ରତିବିଧାନ କରିବା ପାଇଁ ବ୍ୟବସ୍ଥା କଲେ । ଷ୍ଟାଲିନ୍‌ଙ୍କୁ ଏ କାର୍ଯ୍ୟର ଭାର ଦିଆଗଲା । ଏହା ଫଳରେ ଷ୍ଟାଲିନ୍ ସାମ୍ୟବାଦୀ ସରକାରର ପ୍ରତ୍ୟେକ ବିଭାଗ ସହିତ ପ୍ରତ୍ୟକ୍ଷ ସମ୍ପର୍କରେ ଆସି ନିଜର ପ୍ରଭାବ ଓ କ୍ଷମତାକୁ ସୁଦୃଢ଼ କରିବାର ସୁବିଧା ପାଇଲେ । ୧୯୨୨ ମସିହା ମାର୍ଚ୍ଚ ମାସରେ ସାମ୍ୟବାଦୀ କଂଗ୍ରେସର ଏକାଦଶ ଅଧିବେଶନରେ ଷ୍ଟାଲିନ୍ କେନ୍ଦ୍ର କମିଟିର ସାଧାରଣ ସମ୍ପାଦକ ନିର୍ବାଚିତ ହେଲେ । ସେହି ଦିନଠାରୁ ସେ ବରାବର ଦଳର ସାଧାରଣ ସମ୍ପାଦକ ରହି ଆସିଛନ୍ତି ଏବଂ ଏହି ସୂତ୍ରରେ

ଦଳକୁ ପ୍ରଭାବିତ କରି ସମଗ୍ର ଶାସନଯନ୍ତ୍ରର ପ୍ରଧାନ ନିୟାମକ ଓ ସର୍ବେସର୍ବା ହୋଇ ପାରିଛନ୍ତି ।

୧୯୧୮ ସାଲର ହତ୍ୟାଚେଷ୍ଟାରେ ଲେନିନ୍ ଯେ ଗୁରୁତର ଆଘାତ ପାଇଥିଲେ, ସେଥିଯୋଗୁଁ ଏବଂ ନୂତନ ରାଜ୍ୟର ଆର୍ଥିକ, ସାମାଜିକ ତଥା ରାଜନୀତିକ ସଂଗଠନରେ ଅବିଶ୍ରାନ୍ତ ପରିଶ୍ରମ କରିବା ଫଳରେ ୧୯୨୩ ମସିହାରେ ତାଙ୍କର ଏକାବେଳକେ ସ୍ୱାସ୍ଥ୍ୟଭଙ୍ଗ ହୋଇ ପଡ଼ିଲା । କିଛିଦିନ ପକ୍ଷାଘାତ ରୋଗରେ ଶଯ୍ୟାଗତ ହୋଇ ୧୯୨୪ ମସିହା ଜାନୁଆରୀ ମାସରେ ତାଙ୍କର ମୃତ୍ୟୁ ହେଲା । ଲେନିନ୍‌ଙ୍କ ମୃତ୍ୟୁପରେ ଷ୍ଟାଲିନ୍ ଓ ଟ୍ରଟ୍‌ସ୍କିଙ୍କ ଗୋଷ୍ଠୀ ମଧ୍ୟରେ ମତାନ୍ତର ଏବଂ ମନାନ୍ତର କ୍ରମେ ଅଧିକ ଉତ୍କଟତର ହେବାକୁ ଲାଗିଲା । ଲେନିନ୍ ତାଙ୍କ ଉଇଲ୍‌ରେ ଦଳର ସବୁ ବଡ଼ ବଡ଼ ନେତାମାନଙ୍କ ଦୋଷ ଦର୍ଶାଇ ଦେଇ ଯାଇଥିଲେ । ଷ୍ଟାଲିନ୍‌ଙ୍କ ବିଷୟରେ ସେ ଲେଖିଯାଇଥିଲେ ଯେ, ଦଳର ସାଧାରଣ ସମ୍ପାଦକ ହୋଇ ସେ ବହୁତଗୁଡ଼ିଏ କ୍ଷମତା ନିଜ ହାତରେ ରଖିଛନ୍ତି; ଷ୍ଟାଲିନ୍‌ଙ୍କ ସ୍ୱଭାବ ଯେପରି ରୁକ୍ଷ ଏବଂ କର୍କଶ, ସେଥିରେ ସେ ବଲ୍‌ସେଭିକ୍ ଦଳକୁ ବେଶୀ-ଦିନ ସଂହତ ଏବଂ ସଂବଦ୍ଧ ରଖିପାରିବେ ନାହିଁ ବୋଲି ଆଶଙ୍କା ପ୍ରକାଶ କରି ତାଙ୍କୁ ସମ୍ପାଦକ ପଦରୁ କାଢ଼ିଦେବାପାଇଁ ଦଳକୁ ପରାମର୍ଶ ଦେଇ ଯାଇଥିଲେ । ତଦନୁସାରେ ଷ୍ଟାଲିନ୍ ସମ୍ପାଦକପଦ୍ ଇସ୍ତଫା ଦେବାକୁ ବାହାରିଲେ; ମାତ୍ର ଏ ମଧ୍ୟରେ ଅସ୍ତେ ଅସ୍ତେ ଦଳର ଅଧିକାଂଶ ସଭ୍ୟ ଷ୍ଟାଲିନ୍‌ଙ୍କର ଏତେ ଅନୁଗତ ହୋଇ ପଡ଼ିଥିଲେ ଯେ, ସେମାନେ ତାଙ୍କୁହିଁ ପୁଣି ଅତ୍ୟଧିକ ସଂଖ୍ୟାରେ ଭୋଟ ଦେଇ ସାଧାରଣ ସମ୍ପାଦକରୂପେ ନିର୍ବାଚନ କଲେ ।

ଟ୍ରଟ୍‌ସ୍କି ଅବଶ୍ୟ କେନ୍ଦ୍ର କମିଟିର ଜଣେ ବିଶିଷ୍ଟ ସଭ୍ୟ ହୋଇ ରହିଲେ ।

୧୯୨୪ ମସିହା ନଭେମ୍ବର ମାସରେ ସାମ୍ୟବାଦୀ ସୋଭିଏଟ୍ ଶାସନର ସପ୍ତମ ବାର୍ଷିକ ଉତ୍ସବ ଅନୁଷ୍ଠିତ ହେଲା । ଏହି ଉପଲକ୍ଷରେ ୧୯୧୭ ମସିହା ବଲ୍‌ସେଭିକ୍ ବିପ୍ଳବ ସମ୍ବନ୍ଧରେ ଟ୍ରଟ୍‌ସ୍କି ଗୋଟିଏ ପ୍ରବନ୍ଧ ଲେଖିଥିଲେ । ସେଥିରେ ବଲ୍‌ସେଭିକ୍ ଦଳ ଏବଂ ଲେନିନ୍ ଓ ଷ୍ଟାଲିନ୍ ପ୍ରଭୃତିଙ୍କର କେତେକ ଉକ୍ତି ସମାଲୋଚନା କରାହୋଇଥିଲା । ରୁଷିଆ ତମାମ ସମ୍ବାଦପତ୍ରମାନଙ୍କରେ ଏହାର ତୀବ୍ର ସମାଲୋଚନା ହେଲା । ସ୍ଥାନେ ସ୍ଥାନେ ସାଧାରଣ ବିରାଟ ସଭାମାନଙ୍କରେ ଏ ପୁସ୍ତକର ନିନ୍ଦାବାଦ କରାହେଲା ଏବଂ ଟ୍ରଟ୍‌ସ୍କିଙ୍କୁ ବଲ୍‌ସେଭିକ୍ ଦଳର କେନ୍ଦ୍ର କମିଟିରୁ ବାହାର କରିଦେବାକୁ ଦାବୀ ହେଲା । କମିଟିରେ ଷ୍ଟାଲିନ୍‌ଙ୍କ ଅନୁଗତମାନଙ୍କ ସଂଖ୍ୟା ଖୁବ୍ ବେଶୀ ଥିଲା । ସୁତରାଂ ଏ ବିରୁଦ୍ଧ ଜନମତର ସୁବିଧା ପାଇ ସେମାନେ ଟ୍ରଟ୍‌ସ୍କିଙ୍କୁ ଯୁଦ୍ଧମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ବାଧ୍ୟ କଲେ ।

ଟ୍ରଟ୍‌ସ୍କି ଓ ଅନ୍ୟାନ୍ୟ କେତେକ ବିଶିଷ୍ଟ ବଲ୍‌ସେଭିକ୍ ନେତାଙ୍କ ତୀବ୍ର ବିରୋଧ ସତ୍ତ୍ୱେ ଲେନିନ୍ ରୁଷିଆର ତତ୍‌କାଳୀନ ଅବସ୍ଥାକୁ ଗୁହିଁ କାର୍ଲମାର୍କସ୍‌ଙ୍କ ନିର୍ଦ୍ଧାରିତ ମୂଳ ବିଶୁଦ୍ଧ ସାମ୍ୟବାଦ ନୀତିର କେତେକ ପରିବର୍ତ୍ତନ କରି ଏକ ନୂତନ ଅର୍ଥନୀତିକ ଯୋଜନା ପ୍ରସ୍ତୁତ କରିଥିଲେ । ଷ୍ଟାଲିନ୍ ସେହି ଯୋଜନା ଅନୁସାରେ ସମବାୟ ନୀତିରେ ଦେଶର କୃଷି, ଶିଳ୍ପ ଇତ୍ୟାଦିର ପୁନର୍ଗଠନ କରିବାକୁ ଲାଗିଲେ । ବେଶି ଗୃହଜମି ଏବଂ କୃଷି ଉପକରଣମାନଙ୍କର ମାଲିକ ଧନୀ କୃଷକ ବା 'କୁଲାକ୍'ମାନଙ୍କ

ଏହାର ତୀବ୍ର ପ୍ରତିରୋଧ କଲେ । ଟ୍ରଟ୍‌ସ୍କିଙ୍କ ଦଳର ଲୋକେ ମଧ୍ୟ ଭିତରେ ଭିତରେ ରହି ସେମାନଙ୍କୁ ଏ ବିରୋଧରେ ମତାଇଲେ । ବିପ୍ଳବର ମୂଳ ଉଦ୍ଦେଶ୍ୟ ଭୁଲିଯାଇ ଏହାଦ୍ୱାରା ଏକ ପୁଞ୍ଜିବାଦୀ ରାଷ୍ଟ୍ର ଗଢ଼ାଯାଉଛି ବୋଲି ଷ୍ଟାଲିନ୍‌ଙ୍କ ବିରୋଧୀମାନେ ଦଳର ସାଧାରଣ ଅଧିବେଶନରେ ତାଙ୍କୁ ଦୋଷ ଦେଇ ଉତ୍କଟ ସମାଲୋଚନା କଲେ । ଦଳର ଏକତା ରକ୍ଷା କରିବାପାଇଁ ଷ୍ଟାଲିନ୍ ସାଧାରଣ ସମ୍ପାଦକପଦ ଇସ୍ତଫା ଦେଲେ; ମାତ୍ର ଦଳ ବହୁମତରେ ତାଙ୍କୁ ପୁନର୍ନିର୍ବାଚିତ କଲେ । କେତେକ ମାସ ପରେ ଟ୍ରଟ୍‌ସ୍କିଙ୍କ ସ୍ଥାନରେ ଅସ୍ଥାୟୀ ଯୁଦ୍ଧମନ୍ତ୍ରୀ ନିଯୁକ୍ତ ହୋଇଥିବା କେନ୍ଦ୍ରକମିଟିର ଜଣେ ମୁଖିଆ ସଭ୍ୟ ଷ୍ଟାଲିନ୍ ସରକାରର ବିରୋଧ କରିବାପାଇଁ ଉପଯୁକ୍ତ ପନ୍ଥା ଓ କାର୍ଯ୍ୟକ୍ରମ ସ୍ଥିର କରିବା ଉଦ୍ଦେଶ୍ୟରେ ରାଜଧାନୀଠାରୁ ଦୂରବର୍ତ୍ତୀ ଗୋଟିଏ ଜଙ୍ଗଲରେ ବିରୋଧୀମାନଙ୍କର ଏକ ଗୁପ୍ତ ବୈଠକ କରାଇଲେ । ଏ ସମ୍ବାଦ ପାଇ ଷ୍ଟାଲିନ୍ ସେମାନଙ୍କୁ ଜବତ କରିବାପାଇଁ କଠୋର ଦମନନୀତି ଅବଲମ୍ବନ କଲେ । ସେ ଟ୍ରଟ୍‌ସ୍କି ଓ ତାଙ୍କର ସମର୍ଥନକାରୀମାନଙ୍କୁ ଦଳରୁ ବହିଷ୍କୃତ କରିଦେଲେ । କିଛିଦିନ ପରେ ଟ୍ରଟ୍‌ସ୍କିଙ୍କୁ କେନ୍ଦ୍ର ଏସିଆକୁ ନିର୍ବାସିତ କରାଗଲା । ଶହ ଶହ ବିଭାଗୀୟ ମନ୍ତ୍ରୀ ଓ ଚଳିଆ କର୍ମଚାରୀମାନଙ୍କର ଚାକିରି ହୋଇ ସେମାନଙ୍କୁ ଜେଲ, ନିର୍ବାସନ ବା ପ୍ରାଣଦଣ୍ଡ ଦିଆଗଲା ।

କିଛିଦିନ ଉତ୍ତାରୁ ଟ୍ରଟ୍‌ସ୍କିଙ୍କୁ ରୁଷିଆରୁ ନିର୍ବାସିତ କରି ଦିଆଗଲା । ସେ ପ୍ରଥମେ କିଛିଦିନ ତୁର୍କିର ଇସ୍ତାନ୍‌ବୁଲ୍ ସହର ନିକଟବର୍ତ୍ତୀ ପ୍ରିନ୍‌କିପୋ ଦ୍ୱୀପରେ ରହିଲେ ଏବଂ ପରେ ଆମେରିକା ଯାଇ ମେକ୍‌ସିକୋ ସହରରେ ସସ୍ତ୍ରୀକ ବାସକଲେ । ୧୯୪୦ ସାଲରେ ଜଣେ ବଲ୍‌ସେଭିକ୍ ଯୁବକ ମେକ୍‌ସିକୋଠାରେ

ଟ୍ରଟ୍‌ସ୍କିଙ୍କୁ ତାଙ୍କ ନିଜ ବୈଠକଖାନା ଭିତରେ ପିସ୍ତଲରେ ଗୁଳି କରି ମାରିଦେଲେ ।

ଏହିପରି ଭାବରେ ସମସ୍ତ ଅଭ୍ୟନ୍ତରୀଣ ବିରୋଧର ମୂଳପୋଛ କରି ଷ୍ଟାଲିନ୍ ସାମ୍ୟବାଦୀ ସରକାରର ସର୍ବେସର୍ବା ରୂପେ ଦେଶର କୃଷି ଓ ଶିଳ୍ପସଂଗଠନରେ ତନ୍ମୟ ହୋଇ ଲାଗିପଡ଼ିଲେ । ବିଭିନ୍ନ ଦେଶରୁ ବିଶେଷଜ୍ଞମାନଙ୍କୁ ଅଣାଇ ଏକ ପାଞ୍ଚବର୍ଷିଆ ଯୋଜନା ପ୍ରସ୍ତୁତ କରାଗଲା ଏବଂ ତଦନୁସାରେ ବୈଦ୍ୟୁତିକ ଶକ୍ତି ଉତ୍ପାଦନ କରିବାପାଇଁ ଜଳଭଣ୍ଡାର ଓ ରେଲ୍, ମଟର, ଉଡ଼ାଜାହାଜ ପ୍ରଭୃତି ତିଆରି କରିବାପାଇଁ ବଡ଼ ବଡ଼ କଳକାରଖାନାମାନ ବସାହେଲା । ସମବାୟ ନୀତିରେ ଗୋଟିଏ ଗୋଟିଏ ଗ୍ରାମ ବା ଅଞ୍ଚଳର କୃଷକମାନେ ମିଶି ଯେପରି ଉନ୍ନତ ବୈଜ୍ଞାନିକ ଉପାୟରେ ଅଧିକ ପରିମାଣରେ ଶସ୍ୟ ଉତ୍ପାଦନ କରିପାରିବେ, ତହିଁର ବ୍ୟବସ୍ଥା କରାହେଲା । ଯେଉଁମାନେ ନିଜ ସ୍ୱାର୍ଥବୁଦ୍ଧିରୁ ଏହାର ପ୍ରତିରୋଧ କରିବାକୁ ବାହାରିଲେ, ସେମାନଙ୍କ ପ୍ରତି ଖୁବ୍ ଦୃଢ଼ତାର ସହିତ ଶାସ୍ତିବିଧାନ କରାହେଲା । ୧୯୨୯ ମସିହାରେ ପ୍ରଥମ ପାଞ୍ଚବର୍ଷିଆ ଯୋଜନା ଅନୁସାରେ କାର୍ଯ୍ୟ ଆରମ୍ଭ କରାହୋଇଥିଲା; ମାତ୍ର ନିର୍ଦ୍ଦିଷ୍ଟ ସମୟ ଆଗରୁ ଚାରି ବର୍ଷ ଭିତରେ ଏହି ଯୋଜନା କାର୍ଯ୍ୟରେ ପରିଣତ ହୋଇଗଲା । ତତ୍ପରେ ୧୯୩୩ ମସିହା ଜାନୁଆରି ମାସରେ ଆଉ ଏକ ନୂତନ ପାଞ୍ଚବର୍ଷିଆ ଯୋଜନା ଅନୁସାରେ କାର୍ଯ୍ୟ ଆରମ୍ଭ ହେଲା । ତାହା ମଧ୍ୟ ଯଥା ସମୟରେ ସଫଳ ହୋଇଅଛି । ଦ୍ୱିତୀୟ ପାଞ୍ଚବର୍ଷିଆ ଯୋଜନା କାର୍ଯ୍ୟରେ ପରିଣତ ହୋଇଯିବା ପରେ ଯେଉଁ ରିପୋର୍ଟ ପ୍ରକାଶ ପାଇଛି, ସେଥିରୁ ଜଣାଯାଏ ଯେ ଜାରଶାସିତ ରୁଷିଆରେ ୧୯୧୩ ମସିହାରେ ଶିଳ୍ପକାରଖାନାମାନଙ୍କରୁ ଯେ ପରିମାଣ ଦ୍ରବ୍ୟ

ଉନ୍ନତ ହୋଇଥିଲା, ୧୯୩୮ ମସିହାରେ ତାହା ନଅଗୁଣ ବଢ଼ି ଯାଇଅଛି । ଏବେ ତୃତୀୟ ପାଞ୍ଚବର୍ଷିଆ ଯୋଜନା ଅନୁସାରେ ରୁଷିଆ ଏ ପ୍ରବଳ ଯୁଦ୍ଧରେ ପ୍ରାଣପଣେ ଲଢ଼ୁଥିବାବେଳେ ମଧ୍ୟ ସନ୍ତୋଷରେ ସେ କାର୍ଯ୍ୟ ଚାଲିଛି । ୧୯୪୦ ମସିହାରେ ଯଥା ସମୟରେ ତାହା ପୂର୍ଣ୍ଣାଙ୍ଗ ହୋଇଥିବାର ରିପୋର୍ଟ ସମ୍ବାଦପତ୍ର-ମାନଙ୍କରେ ପ୍ରକାଶ ପାଇଲାଣି । ଷ୍ଟାଲିନ୍ ନିଜ ଦେଶଭିତରୁ ଓ ବାହାରୁ ସକଳପ୍ରକାର ପ୍ରତିରୋଧକୁ ଏଡ଼ି କପରି ଦମ୍ଭ, ସାହସ ଓ ଦୃଢ଼ତାର ସହିତ ଦେଶର କୃଷି, ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ ସବୁ ଦିଗରେ ଅପ୍ରତ୍ୟାଶିତ ଉନ୍ନତି ସାଧନ କରିଇ ପାରିଛନ୍ତି, ତାହାର ବିଶଦ ବିବରଣୀ ଲେଖକର 'ଜନଶକ୍ତି' ପୁସ୍ତକରେ 'ସାମ୍ୟବାଦୀ ରୁଷିଆ' ଶୀର୍ଷକ ପ୍ରବନ୍ଧରେ ଦ୍ରଷ୍ଟବ୍ୟ ।

୧୯୩୬ ମସିହାରେ ଷ୍ଟାଲିନ୍ଙ୍କ ସଭାପତିତ୍ୱରେ ଗୋଟିଏ କମିଟି ସାଢ଼େ ପାଞ୍ଚମାସ ବସି ସାମ୍ୟବାଦୀ ରୁଷିଆ ପାଇଁ ଏକ ନୂତନ ଶାସନଯୋଜନା ପ୍ରସ୍ତୁତ କଲା; ମୁଖ୍ୟତଃ ଷ୍ଟାଲିନ୍ଙ୍କ ନିର୍ଦ୍ଦେଶରେ ଏ ଯୋଜନା ତିଆରି ହୋଇଥିବାରୁ ଏହାକୁ "ଷ୍ଟାଲିନ୍ ଶାସନ ଯୋଜନା" କୁହାଯାଏ । ଏଥିରେ ଭାଷା, ଜାତି ଏବଂ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ପ୍ରତ୍ୟେକ ରୁଷିଆବାସୀଙ୍କୁ ସମାନ ଦାୟିତ୍ୱ ଏବଂ ଅଧିକାର ଦିଆଯାଇଅଛି । ପ୍ରତ୍ୟେକ କର୍ମକ୍ଷମ ଲୋକଙ୍କୁ କାର୍ଯ୍ୟ ଯୋଗାଇବା, ପ୍ରୟୋଜନ ଅନୁଯାୟୀ ବିଶ୍ରାମ ଓ ଛୁଟି ଦେବା, ଦେଶର ସମସ୍ତଙ୍କ ସ୍ୱାସ୍ଥ୍ୟ ଓ ଶିକ୍ଷାର ଉପଯୁକ୍ତ ବ୍ୟବସ୍ଥା କରିବା ଓ ରୁଗ୍‌ଣ, ବୃଦ୍ଧ ଓ ଅକ୍ଷମ ଲୋକମାନଙ୍କୁ ଉପଯୁକ୍ତ ପେନ୍‌ସନ୍ ଦେଇ ପ୍ରତିପୋଷଣ କରିବାର ଦାୟିତ୍ୱ ସରକାର ଉପରେ ନ୍ୟସ୍ତ କରାଯାଇଅଛି । ୧୯୩୬ ମସିହା ଡିସେମ୍ବର ମାସ ୧୨ ତାରିଖରେ ଏହି ନୂତନ ଶାସନଯୋଜନା

ଅନୁସାରେ ନିର୍ବାଚନ ହୋଇ ସାମ୍ୟବାଦୀ ସରକାରର ବ୍ୟବସ୍ଥା-ସଭା ଗଢ଼ାଯାଇଅଛି । ସମଗ୍ର ରୁଷିଆର ଭୋଟଦାତାମାନଙ୍କ ମଧ୍ୟରୁ ଶତକଡ଼ା ୯୭ ଭୋଟର୍ ଉପସ୍ଥିତ ହୋଇ ଏ ନିର୍ବାଚନରେ ଭୋଟ ଦେଇଥିଲେ । ରୁଷିଆର ଜନସାଧାରଣ ନିଜ ଦେଶର ଗଣତନ୍ତ୍ର ଶାସନ ସଂସ୍ଥାରେ କପରି ଆଗ୍ରହ ଦେଖାଉଛନ୍ତି ଏହା ତାହାର ପ୍ରମାଣ ।

ଷ୍ଟାଲିନ୍ ବର୍ତ୍ତମାନ ସୋଭିଏଟ୍ ସରକାରର ପ୍ରଧାନ ପରିଚାଳକ ଏବଂ ନିୟାମକ । ଭିନ୍ନ ଭିନ୍ନ ବିଭାଗର ପରିଚାଳନା ପାଇଁ ପରିଶ ଜଣ ମନ୍ତ୍ରୀ ବା ପରିଚାଳକ ଅଛନ୍ତି । ପ୍ରତ୍ୟେକେ କୌଣସି ଗୁରୁତର ବିଷୟରେ ଶେଷ ନିଷ୍ପତ୍ତି କରିବା ପୂର୍ବରୁ ଷ୍ଟାଲିନ୍‌ଙ୍କର ଉପଦେଶ ଏବଂ ପରାମର୍ଶ ଗ୍ରହଣ କରି କାର୍ଯ୍ୟ କରନ୍ତି ।

ନିଜର ପ୍ରତିବେଶୀ ତଥା ପୃଥିବୀର ଅନ୍ୟାନ୍ୟ ସବୁ ଦେଶ ସହିତ ପୂର୍ଣ୍ଣ ଶାନ୍ତିସୌହାର୍ଦ୍ଦ୍ୟରେ ରହି ରୁଷିଆର କୃଷକ ଓ ଶ୍ରମିକ ସାଧାରଣଙ୍କର ସର୍ବବିଧ ଉନ୍ନତି ବିଧାନ କରିବାହିଁ ଷ୍ଟାଲିନ୍‌ଙ୍କର ମୂଳ ବୈଦେଶିକ ନୀତି । ୧୯୩୯ ସାଲ୍‌ରେ ଇଉରୋପୀୟ ମହାଯୁଦ୍ଧର ଅବ୍ୟବହିତ ପୂର୍ବରୁ ଷ୍ଟାଲିନ୍ ହିଟ୍‌ଲରଙ୍କ ସହିତ ଏହିପରି ଏକ ବନ୍ଧୁତାସୂତ୍ରରେ ଆବଦ୍ଧ ହୋଇଥିଲେ । ତା ପୂର୍ବରୁ ଫ୍ରାନ୍‌ସ୍, ହଙ୍ଗେରି, ରୁମାନିଆ, ବୁଲ୍‌ଗେରିଆ ଏବଂ ତୁର୍କୀ ପ୍ରଭୃତି ଦେଶମାନଙ୍କ ସହିତ ମଧ୍ୟ ରୁଷିଆ ଏହିପରି ବନ୍ଧୁତା ଓ ଅନାକ୍ରମଣ ଚୁକ୍ତିରେ ଆବଦ୍ଧ ହୋଇଥିଲା । ଯୁଦ୍ଧ ପୂର୍ବରୁ ଇଂଲଣ୍ଡ ସହିତ ମଧ୍ୟ ଏହିପରି ଚୁକ୍ତି କରିବାକୁ ଷ୍ଟାଲିନ୍ ଆଗ୍ରହ ପ୍ରକାଶ କରିଥିଲେ; ମାତ୍ର ଇଂଲଣ୍ଡର ଜାତିଦ୍ରୋହୀ ସାମ୍ରାଜ୍ୟବାଦୀ ରାଜନୀତିକମାନେ ରୁଷିଆକୁ ସର୍ବଦା ନିତାନ୍ତ

ସନ୍ଦେହ ଦୃଷ୍ଟିରେ ଦେଖୁଥିବାରୁ ତାହା ସମ୍ଭବପର ହୋଇ ନ ଥିଲା । ନିଜଆଡ଼ୁ କାହାରି ସହିତ ଯୁଦ୍ଧ କରିବାକୁ ଇଚ୍ଛୁକ ନ ଥିଲେ ମଧ୍ୟ ଷ୍ଟାଲିନ୍ ଭଲକରି ବୁଝିଥିଲେ ଯେ ରୁଷିଆକୁ ଅନତିବିଳମ୍ବେ ବହିଃଶତ୍ରୁ ଆକ୍ରମଣର ସମ୍ମୁଖୀନ ହେବାକୁ ପଡ଼ିବ । ସେଥିପାଇଁ ସେ ରୁଷିଆକୁ ଉଡ଼ାଜାହାଜବାହିନୀ, ମୋଟରବାହିନୀ, ବୁଡ଼ାଜାହାଜବାହିନୀ ଏବଂ ଆବଶ୍ୟକୀୟ ବୋମା, ଗୁଳି, ବାରୁଦଦ୍ୱାରା ସମ୍ପୂର୍ଣ୍ଣ ସୁସଜ୍ଜିତ ରଖିବାକୁ ବରାବର ତତ୍ପର ରହିଥିଲେ । ରୁଷିଆର ଉତ୍ତର ସୀମାନ୍ତବର୍ତ୍ତୀ ଲେନିନ୍‌ଗ୍ରାଡ୍ ସହରକୁ ସୁରକ୍ଷିତ ରଖିବା ଉଦ୍ଦେଶ୍ୟରେ ତା ଉତ୍ତରରେ ଥିବା ବଲ୍‌ଟିକ୍ ସାଗର ନିକଟବର୍ତ୍ତୀ କେତେକ ଅଞ୍ଚଳ ଷ୍ଟାଲିନ୍ ନିଜର ଅନ୍ୟ ରାଜ୍ୟ ବଦଳରେ ଫିନ୍‌ଲଣ୍ଡ୍‌ଠାରୁ ମାଗିଲେ । ଇଂଲଣ୍ଡ, ଫ୍ରାନ୍‌ସ୍ ପ୍ରଭୃତି ଦେଶମାନଙ୍କ ପ୍ରରୋଚନାରେ ଫିନ୍‌ଲଣ୍ଡ ସେଥିରେ ରାଜି ନ ହେବାରୁ ରୁଷ ସୈନ୍ୟ ସେହି କେତେକ ଅଞ୍ଚଳ ଆକ୍ରମଣ କଲେ । ଶେଷରେ ସନ୍ଧି ହୋଇ ରୁଷିଆ ନିଜର କେତେକ ଅଞ୍ଚଳ ଫିନ୍‌ଲଣ୍ଡ୍‌କୁ ଦେଇ ତାଠାରୁ ଲେନିନ୍‌ଗ୍ରେଡ୍ ନିକଟବର୍ତ୍ତୀ କେତେକ ଭୂଖଣ୍ଡ ନେଲା । ଷ୍ଟାଲିନ୍‌ଙ୍କର ଏହି ଜୋର ଜବରଦସ୍ତି ଆକ୍ରମଣକୁ ସେତେବେଳେ ଗୃହଆଡ଼େ ତୀବ୍ର ସମାଲୋଚନା କରାହୋଇଥିଲା । ମାତ୍ର ପରେ ୧୯୪୧ ସାଲ୍ ଜୁନ୍ ମାସରେ ହିଟଲର ବିଶ୍ୱାସଘାତକ ଭାବରେ ଚୁକ୍ତିଭଙ୍ଗ କରି ରୁଷିଆ ଆକ୍ରମଣ କରିବା ଉତ୍ତାରୁ ଷ୍ଟାଲିନ୍ ଯେ ଆଗରୁ ଦୂରଦୃଷ୍ଟିର ସହିତ ଏତାଦୃଶ ଆତ୍ମରକ୍ଷାର ବ୍ୟବସ୍ଥା କରିଥିଲେ, ତାହା ତାଙ୍କର ସମାଲୋଚକମାନେ ଉପଲବ୍‌ଧି କରି ପାରିଛନ୍ତି ।

୧୯୪୧ ଠାରୁ ୧୯୪୪ ପର୍ଯ୍ୟନ୍ତ ତୁମୁଳ ସଂଗ୍ରାମପରେ ଜର୍ମାନୀ ପରାସ୍ତ ହୋଇଛି । ଏହି ଯୁଦ୍ଧରେ ଅବଶ୍ୟ ଷ୍ଟାଲିନ୍‌ଙ୍କ ନେତୃତ୍ୱରେ

ରୁଷର ସେନା ବାହିନୀ ଅଦ୍ଭୁତ ବିକ୍ରମ ଦେଖାଇଛନ୍ତି । ତା' ଛଡ଼ା ଜର୍ମାନୀର ସୈନ୍ୟ ବାହିନୀକୁ ତିନି ଭାଗରୁ ଏମାନେହିଁ ଛିନ୍ନଛିନ୍ନ କରି ଦେଇଛନ୍ତି । ସେଥିପାଇଁ ଯୁଦ୍ଧର ବିଜୟରେ ଷ୍ଟାଲିନ୍‌ଙ୍କର ନେତୃତ୍ୱର ଖୁବ୍ ପରାକାଷ୍ଠା ଦେଖାଯାଇଛି ଏବଂ ଇଉରୋପର ସମସ୍ତ ଜାତି ତାଙ୍କୁ କୃତଜ୍ଞତା ଜଣାଇଛନ୍ତି ।

କିନ୍ତୁ ଯୁଦ୍ଧ ଭିତରେ ଇଂଲଣ୍ଡ ଆମେରିକା ଆଉ ରୁଷିଆର ଯେଉଁ ବନ୍ଧୁତା ଥିଲା ତାହା ଆଉ ନାହିଁ । ବର୍ତ୍ତମାନ ଗୋଟିଏ ପକ୍ଷରେ ଆମେରିକା ଏବଂ ଇଂଲଣ୍ଡ ଆଉ ଅନ୍ୟ ପକ୍ଷରେ ରୁଷିଆ କୂଟନୀତି ଯୁଦ୍ଧରେ ମାତି ରହିଛନ୍ତି । ଯୁଦ୍ଧପରେ ଶାନ୍ତି ସଂଗଠନ ଲାଗି ଯେଉଁ ମିଳିତ ଜାତିସଂଘର ବୈଠକ ବସୁଛି ସେଥିରେ ନାନା ସଂକ୍ରାନ୍ତରେ ଇଂଲଣ୍ଡ ଏବଂ ଆମେରିକା ସହିତ ରୁଷିଆ ଏକମତ ହୋଇ ପାରୁନାହିଁ । ଉଭୟ ପକ୍ଷ ଉଭୟଙ୍କୁ ଅନ୍ୟ ଦେଶର ରାଜନୀତିରେ ହସ୍ତକ୍ଷେପ କରୁଛନ୍ତି ବୋଲି ଅଭିଯୋଗ କରୁଛନ୍ତି । ଇରାନ୍ ବା ପାରସ୍ୟରେ ଆଉ ଚୀନ୍‌ର କମ୍ୟୁନିଷ୍ଟମାନଙ୍କ ସମସ୍ୟାରେ ରୁଷିଆ ହସ୍ତକ୍ଷେପ କରିବା କଥା ଇଂଲଣ୍ଡ ଏବଂ ବିଶେଷତଃ ଆମେରିକା ଦର୍ଶାଉଛନ୍ତି । ଅନ୍ୟପକ୍ଷରେ ସମସ୍ତ ବ୍ରିଟିଶ ଅଧିକୃତ ପରାଧୀନ ଦେଶ ଏବଂ ଆମେରିକାର ଅର୍ଥନୀତିର କବଳିତ ଚୀନ୍, ଫିଲିପାଇନ୍ ବା ପ୍ରଶାନ୍ତ ମହାସାଗର ଦ୍ୱୀପ-ପୁଞ୍ଜରେ ଚଳିତ ଏବଂ ଆମେରିକା ସରକାରଙ୍କର ସାମ୍ରାଜ୍ୟବାଦ ରୁଷିଆର ଚକ୍ଷୁଶୂଳ ହୋଇଛି ।

ଷ୍ଟାଲିନ୍‌ଙ୍କର ସେଥିପାଇଁ ଏକ ନୂଆ ପରୀକ୍ଷାର ବେଳ ଆସିଛି । ଏବେ ବିଗତର ଯୁଦ୍ଧ ବେଳର ପ୍ରଧାନ ମନ୍ତ୍ରୀ ଚର୍ଚ୍ଚିଲ ସାହେବ ଆମେରିକା ଏବଂ ଇଉରୋପର କେତୋଟି ଦେଶରେ ବୁଲି ବକ୍ତୃତା କରିଥିଲେ । ଉକ୍ତ ବକ୍ତୃତାରେ ଇଂଲଣ୍ଡ ଏବଂ

ଆମେରିକାର ସାମରିକ ଏବଂ ଅନ୍ୟାନ୍ୟ ବିଷୟରେ ଘନିଷ୍ଠ ସହ-ଯୋଗ ପାଇଁ ସେ ସ୍ପଷ୍ଟ ଭାବରେ ପ୍ରସ୍ତାବ କରିଚନ୍ତି । ଯୁଦ୍ଧ ଭିତରେ ତିଆରି ହୋଇଥିବା ପରମାଣୁ ବୋମାର ଗୁପ୍ତ ତଥ୍ୟ କୌଣସିମତେ ରୁଷିଆ ହାତରେ ନ ପଡ଼ିବା ଲାଗି ସେ ସତର୍କ କରାଇଦେନ୍ତି ।

ଏହି ସମସ୍ତ କ୍ରିୟା କଳାପକୁ ସୁଚତୁର ଷ୍ଟାଲିନ୍ ଅବଶ୍ୟ ଲକ୍ଷ୍ୟ କରୁଚନ୍ତି ଏବଂ ଏ ସମ୍ବନ୍ଧରେ ଏକ ଗୁରୁତ୍ୱପୂର୍ଣ୍ଣ ମନ୍ତବ୍ୟ ପ୍ରକାଶ କରିଛନ୍ତି । ଉକ୍ତ ମନ୍ତବ୍ୟରେ ଷ୍ଟାଲିନ୍ କହିଚନ୍ତି ପରମାଣୁ ବୋମାର ଗୁପ୍ତତଥ୍ୟ ଆଉ ଗୁପ୍ତ ହୋଇନାହିଁ । ଇଚ୍ଛା କଲେ ଯେ କୌଣସି ବୃହତ୍ ରାଷ୍ଟ୍ର ତାକୁ ତିଆରି କରି ପାରିବ । ତୃତୀୟ ମହାଯୁଦ୍ଧର ଆଶଙ୍କା ସମ୍ବନ୍ଧରେ ସେ କହିଛନ୍ତି ଯେ ଏ ପ୍ରକାର ଯୁଦ୍ଧ ପୃଥିବୀର ଲୋକେ ଚାହାନ୍ତି ନାହିଁ । ତେଣୁ ନିକଟରେ ଏ ପ୍ରକାର ଯୁଦ୍ଧ ଅବଶ୍ୟମ୍ଭାବୀ ନୁହେଁ । କିନ୍ତୁ ଯୁଦ୍ଧପରେ ରୁଷ୍ ଦେଶରେ ଷ୍ଟାଲିନ୍‌ଙ୍କର ନେତୃତ୍ୱରେ ଯେ ଚତୁର୍ଥ ପଞ୍ଚମବାର୍ଷିକ ଯୋଜନାର କାର୍ଯ୍ୟ ଆରମ୍ଭ ହୋଇଛି ସେଥିରୁ ଜଣା ପଡ଼ୁଛି ଷ୍ଟାଲିନ୍ ଆଉ ଏକ ଆକ୍ରମଣ ଆଶଙ୍କା କରି ସଜବାଜ ହେଉଚନ୍ତି ।

ନିକଟରେ ଭାରତର ମଧ୍ୟବର୍ତ୍ତୀକାଳୀନ ସରକାରର ପ୍ରଧାନ ସଦସ୍ୟ ପଣ୍ଡିତ ଜହରଲାଲଙ୍କ ତରଫରୁ ଶ୍ରୀଯୁକ୍ତ କୃଷ୍ଣ ମେନନ୍ ରୁଷ ବୈଦେଶିକ ମନ୍ତ୍ରୀ ମୋଲୋଟଭଙ୍କ ସହିତ କଥାବାର୍ତ୍ତା ଏବଂ ପରାମର୍ଶ କରିଥିଲେ; ତା' ଛଡ଼ା ଦକ୍ଷିଣ ଅଫ୍ରିକା ସରକାରଙ୍କର ଭାରତୀୟ ବିରୋଧୀ ଆଇନ ସଂକ୍ରାନ୍ତରେ ରୁଷିଆ ଭାରତର ଅଭିଯୋଗ ପ୍ରସ୍ତାବକୁ ପୁରାପୁରି ସମର୍ଥନ କରିଛି । ତା' ଛଡ଼ା ଏଥର ମିଳିତ ଜାତିସଙ୍ଘ ବୈଠକରେ ରୁଷିଆ ନିରସ୍ତ୍ରୀକରଣ ପ୍ରସ୍ତାବ ଆଣିଛି । ଏହି ପ୍ରସ୍ତାବ ଯଦି କାର୍ଯ୍ୟକାରୀ ହୁଏ ତେବେ

ପୃଥିବୀର ଶାନ୍ତିସ୍ଥାପନ ଦିଗରେ ଷ୍ଟାଲିନ୍‌ଙ୍କର ନେତୃତ୍ୱ ମଧ୍ୟ ଅମର ଅକ୍ଷରରେ ଲିଖିତ ହେବ।

ବିଗତ ଫେବୃଏରି ନିର୍ବାଚନରେ ଷ୍ଟାଲିନ୍ ପୁନର୍ବାର ରୁଷିଆର ପ୍ରଧାନ ମନ୍ତ୍ରୀ ଆସନ ନେଇଛନ୍ତି। ବର୍ତ୍ତମାନ ସେ ଏହି ବିଶାଳ ଭୂଖଣ୍ଡର ଅପ୍ରତିଦ୍ୱନ୍ଦ୍ୱୀ ନେତା। ତା’ ଛଡ଼ା ପୂର୍ବ ଇଉରୋପର ଅଧିକାଂଶ ଦେଶରେ ତାଙ୍କର ଖ୍ୟାତି ଏବଂ ପ୍ରତିପତ୍ତି ଆଜି ପ୍ରତ୍ୟେକ ପୁରପଲ୍ଲୀରେ ସ୍ୱୀକୃତ ହେଉଛି। ବର୍ତ୍ତମାନ ତାଙ୍କର ଦେଶ ପରି ଆଦର୍ଶରେ ଗଠିତ ରାଜ୍ୟ ଇଉରୋପର ଅନ୍ତତଃ ଗୋଟିଏ ପାଞ୍ଚୋଟି। ସେଥିପାଇଁ ଆଉ ଯୁଦ୍ଧବେଳେ ଯେପରି ଚାରି ପାଖରୁ ଘେରାଉ ହେବାର ଭୟରେ ଷ୍ଟାଲିନ୍ ଅତି ସତର୍କ ଭାବରେ ଆପଣାର କୂଟନୀତିର ମଙ୍ଗ ଧରିଥିଲେ ଏଥର ସେ ଭୟ ନାହିଁ। ଇଉରୋପର ଫ୍ରାଙ୍କୋ ଶାସିତ ସ୍ପେନ, ବ୍ରିଟିଶ ଆଉ ଆମେରିକା ପୋଷିତ ତୁର୍କୀ ଆଉ ବ୍ରିଟିଶ ସାମରିକ ଶକ୍ତିପୁଷ୍ଟ ଦୃଷ୍ଟିଥିବା ଗ୍ରୀସ୍ ରାଜତନ୍ତ୍ର ତା’ ଛଡ଼ା ଆମେରିକା ଗୃହୀତ କୋମିଣ୍ଟାନ୍ ଚୀନ ଆଉ ଯୁଦ୍ଧପର ଜାପାନ ସମସ୍ୟାରେ ଷ୍ଟାଲିନ୍ ଅବିଚଳ ଆପୋଷହୀନ ମତ ପୋଷଣ କରିଛନ୍ତି। ଏ ସମସ୍ତ ସମସ୍ୟା ଏ ପର୍ଯ୍ୟନ୍ତ ଭବିଷ୍ୟତର ଗର୍ଭରେ।

ଷ୍ଟାଲିନ୍‌ଙ୍କ ନିରାଡ଼ମ୍ବର ସରଳ ଜୀବନ ଏବଂ ବ୍ୟକ୍ତିଗତ ଅନାବିଲ ଚରିତ୍ର ତାଙ୍କର ଦେଶବାସୀ ଓ ସହକର୍ମୀମାନଙ୍କୁ ନିଜର ଆଦର୍ଶରେ ବିଶେଷଭାବରେ ଅନୁପ୍ରାଣିତ କରାଇ ପାରୁଅଛି। ରୁଷିଆର କୌଣସି ସାଧାରଣ କୃଷକ ଓ ଶ୍ରମିକ ଯେପରି ଭାବରେ ଚଳେ ଷ୍ଟାଲିନ୍ ଠିକ୍ ସେହିପରି ଭାବରେ ଚଳନ୍ତି। ଷ୍ଟାଲିନ୍ ବା ତାଙ୍କର ସହକର୍ମୀ ଅନ୍ୟ ମନ୍ତ୍ରୀ ବା ଉଚ୍ଚ ପଦସ୍ଥ କର୍ମଚାରୀମାନେ ସାଧାରଣ ଲୋକଙ୍କ ପରି ଦୁଇଟି ମାତ୍ର କୋଠରୀରେ ରହି ଚଳାଚଳ କରନ୍ତି। ରୁଷିଆରେ କୌଣସି ସରକାରୀ କର୍ମଚାରୀ ଛଅଶହ ରୁବଲ୍

ଅର୍ଥାତ୍ ପ୍ରାୟ ତନି ଶହ ଟଙ୍କାରୁ ଅଧିକ ମାସିକ ବେତନ ପାଆନ୍ତି ନାହିଁ । ରୁଷ ସରକାରର ସର୍ବେସର୍ବା ଷ୍ଟାଲିନ୍ ସର୍ବମୋଟ ଏକ ହଜାର ଋେବଲ୍ ବା ପାଞ୍ଚଶତ ଟଙ୍କା ମାତ୍ର ମାସିକ ଭତ୍ତା ନଅନ୍ତି । ନିଜ ଦେଶପ୍ରତି ଏବଂ ଜାତିପ୍ରତି ଏ କର୍ତ୍ତବ୍ୟବୋଧ ଆଜି ଷ୍ଟାଲିନ୍‌ଙ୍କୁ ସମଗ୍ର ରୁଷିଆର ଜନସାଧାରଣଙ୍କ ଦେବୋପମ ଭକ୍ତି ଏବଂ ଶ୍ରଦ୍ଧା ଅର୍ଜନ କରିବାରେ ସମର୍ଥ କରାଇଅଛି ।

କେବଳ ରୁଷିଆର କାହିଁକି ଅନ୍ୟାନ୍ୟ ସମସ୍ତ ପୁଞ୍ଜିବାଦୀ ଦେଶମାନଙ୍କର ନିର୍ଯ୍ୟାତିତ ଏବଂ ଶୋଷିତ କୃଷକ ଏବଂ ଶ୍ରମିକ ସାଧାରଣ ଆଜି ଷ୍ଟାଲିନ୍‌ଙ୍କୁ ପୃଥିବୀର ଜଣେ ପ୍ରଧାନ ଜନନାୟକ-ରୂପେ ଶ୍ରଦ୍ଧା ଏବଂ ଭକ୍ତି ଅର୍ପଣ କରୁଛନ୍ତି । ଷ୍ଟାଲିନ୍ ରୁଷିଆରେ କୃଷକ ଏବଂ ଶ୍ରମିକ ସାଧାରଣଙ୍କ ସୋଭିଏଟ୍ ଶାସନ ସଂଗଠନକୁ ବାସ୍ତବ ଆକାର ଦେଇ ପୃଥିବୀ ସମକ୍ଷରେ ନିଃସନ୍ଦିଗ୍ଧ ଭାବରେ ପ୍ରମାଣ କରି ଦେଖାଇ ଦେଇଛନ୍ତି ଯେ, ସାମ୍ୟବାଦ ରାଷ୍ଟ୍ରସଂଗଠନ କେବଳ ଆଦର୍ଶବାଦୀର କଳ୍ପନା ନୁହେ, ଦରିଦ୍ର ଶ୍ରମିକ କୃଷକ ସାଧାରଣଙ୍କ ମୁକ୍ତି ଏବଂ ସର୍ବବିଧ ଉନ୍ନତି ସାଧନର ଏହା ପ୍ରଧାନ ଅଭ୍ରାନ୍ତ ମାର୍ଗ । ରୁଷିଆ ଇଂଲଣ୍ଡ ସହିତ ମିଳି ଏକ ମିତ୍ରପକ୍ଷରୂପେ ଏ ମହାସମରରେ ଗଣତନ୍ତ୍ର ମର୍ଯ୍ୟାଦା ରକ୍ଷାଲାଗି ଲଢ଼ାଇ କରୁଥିବାରୁ ଭବିଷ୍ୟତରେ ପୁନର୍ବାର 'ଫେରେ ଶାନ୍ତି' ସମ୍ମିଳନୀରେ ଏସିଆ ଏବଂ ଆଫ୍ରିକାର ସାମ୍ରାଜ୍ୟବାଦୀ ସରକାରମାନଙ୍କ ଅଧୀନସ୍ଥ ଶାସିତ ଦେଶମାନେ ସେମାନଙ୍କ ସ୍ୱାଧୀନତା ଏବଂ ଗଣତନ୍ତ୍ର ପ୍ରତିଷ୍ଠା ଦାବିରେ ଷ୍ଟାଲିନଙ୍କ ପରି ବିପ୍ଳବୀ ଗଣତନ୍ତ୍ରବାଦୀ ଜନନାୟକଙ୍କର ପୂର୍ଣ୍ଣ ସମର୍ଥନ ପାଇବେ ବୋଲି ଆଶା ପୋଷଣ କରିଛନ୍ତି ।

---

ବ୍ରହ୍ମପୁର ଷ୍ଟାର୍ ପ୍ରେସ୍‌ରେ ଶ୍ରୀ ଦାମୋଦର ରଥଙ୍କ ଦ୍ୱାରା ମୁଦ୍ରିତ ।